ଶିଶୁ ସଂସାର—୧

# ବିଲାତରେ ବାବୁ ଓ ପାପୁ

ଲେଖକ

ଡକ୍ଟର ଗଣେଶ୍ୱର ମିଶ୍ର



ପ୍ରକାଶକ :

ଅଗ୍ରଦୂତ

କଟକ-୨

# ବିଲାତରେ ଢାବୁ ଓ ପାପୁ

ଲେଖକ :

**ଡକ୍ଟର ଗଣେଶ୍ୱର ମିଶ୍ର**

ରିଡର୍, ଇଂରାଜୀ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

ପ୍ରକାଶକ :

ଶ୍ରୀ ବୀରବର ମହାନ୍ତି

**ଅଗ୍ରଦୂତ ପ୍ରକାଶନୀ**

ବାଙ୍କା ବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୮୦

ପ୍ରଚ୍ଛଦପଟ :

ଶ୍ରୀ ପ୍ରତାପ ପଟ୍ଟନାୟକ

ମୁଦ୍ରଣ :

**ସ୍ୱରାଜ ପ୍ରେସ, କଟକ-୧**

ମୂଲ୍ୟ : **ତିନିଟଙ୍କା ମାତ୍ର**

---

Paper used for Printing of this book was made available by Government of Orissa at Concessional rate.

# ବାବୁ ଓ ପାପୁ ବିଲାତରେ ପହଂଚିଲେ

ବାବୁ ଓ ପାପୁ ଦୁଇଟି ଓଡ଼ିଆ ପିଲା । ସେମାନଙ୍କ ବୟସ ସାତ ଓ ପାଞ୍ଚ । ସେମାନଙ୍କ ବାପା ବିଲାତରେ ରହୁଥିଲେ । ତେଣୁ ସେମାନେ କେମିତି ବିଲାତ ଯିବେ, ସେଇ କଥା ସବୁବେଳେ ଭାବୁଥିଲେ । ଶେଷରେ ଦିନେ ଜୁନ୍ ମାସରେ ମାଆଙ୍କ ସଙ୍ଗେ ସେମାନେ ବିଲାତରେ ପହଞ୍ଚିଲେ । କଲିକତାରୁ ଉଡ଼ାଜାହାଜରେ ପ୍ରାୟ ବାରଘଣ୍ଟା ବସି ସେମାନେ ଲଣ୍ଡନ ସହରରେ ଓହ୍ଲାଇଲେ ।

ତୁମେମାନେ ଶୁଣିଥିବ, ବିଲାତ ଗୋଟିଏ ଥଣ୍ଡା ଦେଶ । ସେଠି ସବୁବେଳେ ବରଫ ପଡ଼େ, ସୂର୍ଯ୍ୟକିରଣ ବେଶୀ ଦେଖିବାକୁ ମିଳେନାହିଁ । ବାବୁ ଓ ପାପୁ ବି ଠିକ୍ ସେମିତି ଶୁଣିଥିଲେ । ତେଣୁ ସେମାନେ ଖୁବ୍ ଗରମ ପୋଷାକ ପିନ୍ଧି ଭାରତରୁ ଯାଇଥିଲେ । କିନ୍ତୁ ମଜା କଥା କ'ଣ ଜାଣ ? ସେମାନେ ଯେଉଁଦିନ ପହଞ୍ଚିଲେ, ସେଦିନ ବିଲାତରେ ଠିକ୍ ଭାରତ ପରି ପାଗ ହୋଇଥିଲା । ଚାରିଆଡ଼େ ଟକ୍ ଟକ୍ ସୂର୍ଯ୍ୟ କିରଣ । ବହୁଲୋକ ସେମାନଙ୍କ କୋଟ୍, ସ୍ୱେଟର୍ ନ ପିନ୍ଧି ଢିଲା ପୋଷାକ ସବୁ ପିନ୍ଧିଥିଲେ । ପାଗ ଭଲ ଥିବାରୁ ରାସ୍ତାରେ ବଜାରରେ ବହୁଲୋକ ମନଖୁସିରେ ବୁଲୁଥିଲେ ।

ବାବୁ ଓ ପାପୁ ମନରେ ଟିକିଏ ଦୁଃଖ କଲେ । ସେମାନେ ବାଟସାରା ଭାବି ଭାବି ଆସିଥିଲେ, ବିଲାତରେ ପହଞ୍ଚି ଦେଖିବେ, ଆକାଶରୁ ବରଫ ପଡ଼ୁଛି । କିନ୍ତୁ ବରଫ କାହିଁ ?

ବିଲାତ ଥଣ୍ଡା ଦେଶ ସତ, କିନ୍ତୁ ମାର୍ଚ୍ଚଠାରୁ ଜୁନ୍‌ମାସ ଯାଏ ସେଠି ପାଗ ଶୁଖିଲା ରହେ । ପ୍ରାୟ ସବୁଦିନ ସୂର୍ଯ୍ୟକିରଣ ପଡ଼େ । ସେତେବେଳେ ଗଛଗୁଡ଼ିକରେ ସବୁଜ ପତ୍ର କଅଁଳେ ଓ ସୁନ୍ଦର ରଙ୍ଗୀନ ଫୁଲସବୁ ଫୁଟେ । ଲୋକେ ଏଇ ସମୟରେ ବୁଲିବାକୁ ବାହାରନ୍ତି




( ବଲଡର ଗୋଟିଏ ରସ୍ତା )

ସ୍ଥାନକୁ ଯାଆନ୍ତି । ଖରା ପଡ଼ିଲେ ଅନେକେ ଖାଲି ଦେହରେ ଘାସ ପଡ଼ିଆରେ କି ସମୁଦ୍ର-କୂଳେ ଖରପୁଅନ୍ତି । ଏହାକୁ 'ଖରାରେ ଗାଧୋଇବା' କହନ୍ତି ।

କିନ୍ତୁ ଆଉ ସବୁ ସମୟରେ ଥଣ୍ଡା, ବରଫ ଓ କୁହୁଡ଼ି ଲାଗି ରହିଥାଏ । ଥଣ୍ଡାରେ ଘରୁ ବାହାରିବା ସହଜ ହୁଏନାହିଁ । ଲମ୍ବା କୋଟ୍, ମୁଣ୍ଡରେ ଟୋପି, ହାତରେ ମୋଜା ପିନ୍ଧି ଲୋକେ କାମକୁ ଯାଆନ୍ତି । ବେଳେ ବେଳେ କୁହୁଡ଼ି ଏତେ ବହଳ ହୁଏ ଯେ ତୁମ ଆଗରେ କିଏ ଆସୁଛି, ଦେଖାଯାଏ ନାହିଁ । ବାଟରେ ମୋଟର ଗାଡ଼ି ଚାଲିବା ବନ୍ଦ ହୋଇଯାଏ । ଦିନ ଦି'ପହରେ ବି ରାସ୍ତାରେ ବିଜୁଳିବତି ଜଳାଇ ରଖାଯାଏ । ପୁଣି ବରଫ ପଡ଼ିଲେ ଚାରିଆଡ଼ ଧୋବ ଫର୍ ଫର୍ ଦିଶେ । ବେଳେ ବେଳେ ବହୁତ ବରଫ ପଡ଼ିଲେ ରାସ୍ତାରେ ଗାଡ଼ି ଚାଲିପାରେ ନାହିଁ । ଏମିତି କି ଘରସବୁ ବରଫରେ ପୋତି ହୋଇଯାଏ ।

ବାବୁ ଓ ପାପୁ ବିଲାତରେ ପହଞ୍ଚିବାର ଅନେକ ଦିନପରେ ବରଫ ପଡ଼ିବା ଦେଖିଲେ । ବରଫ ପଡ଼ିବା ଦିନ ସେମାନଙ୍କର କି ଆନନ୍ଦ !!

## ବିଲାତରେ ସେମାନଙ୍କ ଘର :

ବାବୁ ଓ ପାପୁ ଲଣ୍ଡନ୍‌ରେ ପହଞ୍ଚିବାବେଳକୁ ସେମାନଙ୍କ ବାପା ଉଡ଼ାଜାହାଜ ଘାଟିରେ ଅପେକ୍ଷା କରି ରହିଥାନ୍ତି । ବାଟରେ ବାବୁର କିଛି ଅସୁବିଧା ହୋଇ ନ ଥାଏ, କିନ୍ତୁ ପାପୁର ଦେହ ଟିକିଏ ଖରାପ ଲାଗୁଥାଏ । ଓଡ଼ିଶାରୁ କଲିକତା, ପୁଣି କଲିକତାରୁ ଲଣ୍ଡନ୍ ଆସିବା ଭିତରେ ସେ ହାଲିଆ ହୋଇ ପଡ଼ିଥାଏ ।

ଲଣ୍ଡନ୍‌ରୁ ବାବୁ, ପାପୁ ଓ ସେମାନଙ୍କ ବାପାମାଆ ବସ୍‌ରେ ବସି ଆଉ ଗୋଟିଏ ସୁନ୍ଦର ସହରକୁ ଆସିଲେ । ସହରଟିର ନାଁଆ କ୍ୟାଣ୍ଟେର୍‌ବରୀ । ଏଇ ପୁରୁଣା ସହରଟି ବିଲାତର ଦକ୍ଷିଣରେ, ସମୁଦ୍ର କୂଳରୁ ଅଳ୍ପ ଦୂରରେ । ବାବୁ ଓ ପାପୁଙ୍କର ବାପା ସେଇ ସହରରେ ରହୁଥିଲେ । ତେଣୁ ବାବୁ ଓ ପାପୁଙ୍କର ନୂଆ ଘର ହେଲା ଏଇ କ୍ୟାଣ୍ଟେର୍‌ବରୀ ସହର । ସେମାନେ ବସ୍‌ରେ କ୍ୟାଣ୍ଟେର୍‌ବରୀ ସହରର ବସ୍‌ଷ୍ଟାଣ୍ଡକୁ ଆସି ସିଧା ଗୋଟିଏ ଟାକ୍‌ସିରେ ସେମାନଙ୍କ ଘରକୁ ଗଲେ । ବାପ୍‌ରେ ! କି ସୁନ୍ଦର ଘର ! ଘରର ଚାରିଆଡ଼ କି ସଫା ସୁତୁରା !!! ପିଲାଦୁହେଁ ଖୁସିରେ ଘରର ଏଆଡ଼ ସେଆଡ଼ ବୁଲି ଦେଖିବାକୁ ଲାଗିଲେ ।

ବିଲାତର ଏଇ ଘରଟି ଭିତରରେ ତାଙ୍କ ଘରଠାରୁ ଅଲଗା ଜଣା ପଡ଼ୁଥାଏ । ଘରର ଝରକା ସବୁ କାଚରେ ତିଆରି । ଘରର ଚଟାଣ ସାରା ଗାଲିଚା ବିଛା ହୋଇଥାଏ । ପୁଣି ଘରର କାନ୍ଥରେ ଗୋଟିଏ ସ୍ଥାନରେ ଗୋଟିଏ ହିଟର ଖଞ୍ଜା ହୋଇଥାଏ । ବାବୁ ଓ ପାପୁ ଆଗରୁ ଏମିତି ହିଟର ଦେଖି ନ ଥିଲେ । 'ଏଇଟା କ'ଣ ?' ସେମାନେ ପଚାରିଲେ ।

ସେମାନଙ୍କ ବାପା ବୁଝାଇ ଦେଲେ, "ବିଲାତ ଥଣ୍ଡା ଦେଶ ହୋଇଥିବାରୁ ଏଠାରେ ଘର ଗରମ ରଖିବା ଦରକାର । ଶୀତ ଦିନେ ଘର ଗରମ ନ କଲେ ଘରେ ରହିହେବ ନାହିଁ । ଆଗେ ଲୋକେ ଘର ଗରମ ରଖିବା ପାଇଁ କାଠ କି କୋଇଲା ଜାଳୁଥିଲେ । ଏବେ ଅନେକ ଲୋକଙ୍କ ଘରେ ବିଜୁଳି ହିଟର ଜଳେ । ଆଉ କେତେକ ଘରେ ଘରଆଡ଼େ ଲୁହା ପାଇପ ସବୁ ଖଞ୍ଜା ହୋଇଛି । ତା ଭିତରେ ଗରମ ପାଣି ବା ଗରମ ବାମ୍ପ ପୂରାଇ ଘର ଗରମ ରଖାଯାଏ ।"

ବାବୁ ଓ ପାପୁ ରୋଷେଇ ଘରେ ଦେଖିଲେ, ବଡ଼ ବିଜୁଳି ଚୁଲ୍ଲି, ଫ୍ରିଜ ଓ ଆଉରି କେତେ ନୂଆ ଜିନିଷ । ସେମାନେ ପଚାରିଲେ, "ବାପା, ତୁମେ କ'ଣ ଏସବୁ କିଣିଛ ?"

ସେମାନଙ୍କ ବାପା କହିଲେ, "ନା, ଏଠି ଭଡ଼ାଘରେ ସବୁ ଜିନିଷ ଥାଏ । ଶୋଇବାଠାରୁ କାନ୍ଥରେ ଟଙ୍ଗା ହୋଇଥିବା ଛବିଯାଏଁ ଯାହାସବୁ ଦେଖୁଛ, ସବୁ ଏଇ ଘର ମାଲିକଙ୍କର । ଆମେ ଏ ଘରେ ଯେତେଦିନ ରହିବା, ସବୁ ଜିନିଷ ଠିକ୍ ଠିକ୍ ରଖିବା । ବିଲାତରେ ଲୋକେ ଘରର ବହୁତ ଯତ୍ନ ନିଅନ୍ତି ।'

ବାବୁ ଓ ପାପୁ ସେ ଘରଟିକୁ ବହୁତ ଭଲ ପାଇଲେ । ଝରକା ବନ୍ଦ ଥିଲେ ବି କାଚଭିତରୁ ସବୁବେଳେ ବାହାର ଦେଖି ହେଉଥାଏ । ସେମାନଙ୍କ ଘର ପାଖରେ ଯେତେ ଘର, ସବୁ ଏକା ପରି, ସମସ୍ତଙ୍କ ଘର ଆଗରେ ସୁନ୍ଦର ସୁନ୍ଦର ଫୁଲ ବଗିଚା । ବାଡ଼ ନ ଥିଲେ ବି କେହି ଫୁଲଟିଏ ଛିଣ୍ଡାଉ ନ ଥାନ୍ତି । ବାବୁ ପଚାରିଲା, 'ବାପା, ଏଠି ଗାଈମାନେ ଫୁଲଗଛ ଖାଇଯାଉ ନାହାନ୍ତି ?"

ବାପା ହସିଲେ । କହିଲେ, "ଏଠି ଆମ ଦେଶପରି ଗୋରୁଗାଈମାନେ ରାସ୍ତାରେ ବୁଲନ୍ତି ନାହିଁ । ବାଡ଼ ଘେର ଭିତରେ ସବୁ ଜୀବଜନ୍ତୁଙ୍କୁ ରଖାଯାଏ ।"

ବାବୁ କହିଲା, "ଆମ ଦେଶରେ ଏମିତି ହେଲେ କେଡ଼େ ବଢ଼ିଆ ହୁଅନ୍ତା ! ଆମ ଗଛସବୁ ଜୀବଜନ୍ତୁମାନେ ଖାଇପାରନ୍ତେ ନାହିଁ ।"

ବାପା କହିଲେ, "ଆମ ଲୋକେ ବି ବଗିଚାର ଭଲ ଯତ୍ନ ନଅନ୍ତି ନାହିଁ । ଏଠାରେ କିନ୍ତୁ ଲୋକେ ଗଛପତ୍ରକୁ ବହୁତ ଭଲ ପାଆନ୍ତି ଓ ବଗିଚାର ଭଲ ଯତ୍ନ ନଅନ୍ତି ।"

ବାବୁ ଓ ପାପୁ ଯେତେଦିନ ସେ ଘରେ ରହିଲେ, ବଗିଚାର ବହୁତ ଯତ୍ନ ନେଲେ । ପାପୁ ସବୁବେଳେ କହୁଥାଏ, "ଆମେ ଭାରତକୁ ଗଲେ ଗୋଟିଏ ବଡ଼ ବଗିଚା କରିବା ଓ ସେଥିରେ ବହୁତ ଗଛ ଲଗାଇବା ।"

## ସୁପର୍ ମାର୍କେଟରେ ବାବୁ ଓ ପାପୁ :

ଦିନେ ସକାଳୁ ସକାଳୁ ବାବୁ ଓ ପାପୁ ସେମାନଙ୍କ ବାପାଙ୍କ ସଙ୍ଗେ ବଜାର ସଉଦା କରିବା ପାଇଁ ବାହାରିଲେ । ବଜାର ସେମାନଙ୍କ ଘରଠାରୁ ବେଶୀ ଦୂର ନୁହେଁ । ତେଣୁ ସେମାନେ ଚାଲି ଚାଲି ଯିବାକୁ ଠିକ୍ କଲେ ।

ସେଦିନ ଶନିବାର । ବିଲାତରେ ସପ୍ତାହରେ ଦୁଇଦିନ ଛୁଟି—ଶନିବାର ଓ ରବିବାର । ତେଣୁ ବଜାର ସଉଦା କିଣିବାପାଇଁ ଓ ସହରରେ ବୁଲାବୁଲି କରିବା ପାଇଁ ବହୁଲୋକ ବାହାରିଥାନ୍ତି । କେହି କେହି ଚାରୋଟି ବା ଦୁଇଟି ଛୋଟ ଚକ ଲାଗିଥିବା ଟ୍ରଲି (ବଡ଼ ବ୍ୟାଗ୍) ଗଡ଼ାଇ ଗଡ଼ାଇ ନେଉଥାନ୍ତି । ବାବୁ ଓ ପାପୁ ଆଗରୁ ଏମିତି ଟ୍ରଲି ଦେଖି ନ ଥିଲେ । ସେମାନଙ୍କ ବାପା କହିଲେ, "ଲୋକେ ଏଇଥିରେ ସଉଦା ଜିନିଷ ପୂରାଇ ଘରକୁ ଆଣନ୍ତି । ଏଠି ତ ସଉଦାପତ୍ର ବୋହିବା ପାଇଁ କୁଲି ମିଳନ୍ତି ନାହିଁ । ତେଣୁ ଯେଉଁମାନଙ୍କର ମୋଟର ଗାଡ଼ି ନାହିଁ, ଟ୍ରଲିରେ ଜିନିଷ ଆଣିବା ସେମାନଙ୍କ ପାଇଁ ସହଜ ।"

ବାବୁ ଓ ପାପୁ ଅଳ୍ପ ସମୟ ପରେ ସହରର ସବୁଠୁ ବେଶୀ ଲୋକ ଗହଳି ସ୍ଥାନରେ ପହଞ୍ଚିଲେ । ରାସ୍ତା ଦୁଇପାଖେ ଦୁଇ ମହଲା ତିନି ମହଲା ଦୋକାନସବୁ ଠିଆ ହୋଇଥାନ୍ତି । ଦୋକାନର ସାମ୍ନାକାଚ ଭିତରୁ ଦୋକାନ ଭିତରର ଜିନିଷସବୁ ସଫା ଦେଖି ହେଉଥାଏ ।

ସେମାନେ ଗୋଟିଏ ଦୋକାନ ଭିତରେ ପଶିଲେ । ଦୋକାନ ଭିତରଟି ବହୁତ ଲମ୍ବା । ବିଭିନ୍ନ ସ୍ଥାନରେ ବିଭିନ୍ନ ଜିନିଷ ସବୁ ସଜାହୋଇ ରଖା ଯାଇଥାଏ—ଲୁଗାପଟା, ବହିପତ୍ର, କଣ୍ଢେଇ, କାଚ ବାସନ, ତେଲ ସାବୁନ, ଫୁଲ ଓ ଫଳର ମଞ୍ଜି, ଏମିତି କେତେ




( ବିଲାତର ଗୋଟିଏ ସୁପର ମାର୍କେଟ )

କ'ଣ । ଅନେକ ଝିଅ ନେଳି ରଙ୍ଗର ପୋଷାକ ପିନ୍ଧି, କାନ୍ଧରେ ବ୍ୟାଜ୍ (ପଟି) ଲଗାଇ ଭିନ୍ନ ଜିନିଷ ଥିବା ସ୍ଥାନରେ ଠିଆ ହୋଇଥା'ନ୍ତି । ଗରାଖମାନେ କିଛି ପଚାରିଲେ ସେମାନେ ବୁଝାଇ ଦେଉଥାନ୍ତି । କେହି କେହି ଦୋକାନ ଭିତରେ ବୁଲି ବୁଲି ସେମାନଙ୍କ ସଉଦା ବ୍ୟାଗ୍‌ରେ ରଖି ଦୋକାନ ଦୁଆରକୁ ଆସୁଥାନ୍ତି । ସେଠି ଗୋଟିଏ ଝିଅ ହିସାବ କରି ଯନ୍ତ୍ର ବା କାଲ୍‌କୁଲେଟିଂ ମେସିନ୍‌ରେ ସଉଦା ଜିନିଷର ଦାମ୍ ମିଶାଉଥାଏ । ଗରାଖମାନେ ସଉଦାର ଦାମ୍ ଦେଇ ରସିଦ ନେଇ ବାହାରକୁ ଯାଉଥାନ୍ତି ।

ବାବୁ ଓ ପାପୁକୁ ଦୋକାନଟି ଖୁବ୍ ଭଲ ଲାଗିଲା । ଏତେବଡ଼ ଦୋକାନ—ପୁଣି ସବୁ ରକମର ଜିନିଷ ଗୋଟିଏ ଜାଗାରେ ରଖା ଯାଇଛି । ଗରାଖମାନେ ଦୋକାନ ଭିତରେ ବୁଲି ବୁଲି ନିଜମନକୁ ପାଇଲା ଭଳି ଜିନିଷ ବାଛି ବାଛି ନେଉଛନ୍ତି ।

ବାପା କହିଲେ, "ଏମିତି ବଡ଼ ବଡ଼ ଦୋକାନରେ କୋଟି କୋଟି ଟଙ୍କାର ଜିନିଷ ଥାଏ । ଏମାନଙ୍କୁ କହନ୍ତି 'ସୁପର୍ ମାର୍କେଟ୍ ।' ଆମ ଦେଶରେ ଏମିତି ବଡ଼ ବଡ଼ ଦୋକାନ ଖୁବ୍ କମ୍ ଅଛି । ଆମରି ଗରିବ ଦେଶ । ଦାମିକା ଜିନିଷ କିଣିବା ପାଇଁ ଇଂରେଜ ଲୋକଙ୍କ-ପରି ଆମ ଲୋକଙ୍କ ହାତରେ ପଇସା କାହିଁ ?"

ବାବୁ ଓ ପାପୁ ଆଉ କେତୋଟି ସୁପର୍ ମାର୍କେଟ ବୁଲି ଦେଖିଲେ । ଗୋଟିଏ ସୁପର ମାର୍କେଟ ଚାରିମହଲା । ଗୋଟିଏ ମହଲା ପୁଣି ଭୂଇଁ ତଳେ ଥାଏ । ଗୋଟିଏ ମହଲାରୁ ଉପର ମହଲାକୁ ଯିବା ପାଇଁ କଳ ପାହାଚ ବା ଏସ୍‌କାଲେଟର୍ ଲାଗିଥାଏ । ଏମିତି କଳ-ପାହାଚରେ ଠିଆ ହୋଇଗଲେ ତୁମେ ଆପଣା ଛାଏଁ ଉପରକୁ ଯାଇ ପାରିବ ଓ ତଳକୁ ଆସି ପାରିବ । ପାପୁ ଏମିତି କଳ-ପାହାଚରେ ଚଢ଼ିବାକୁ ଡରିଲା । ବାବୁ କିନ୍ତୁ ନ ଡରି ଏକା ଥରକେ ସେମିତି ପାହାଚରେ ଚଢ଼ି ଉପର ମହଲାକୁ ଉଠିଗଲା । ଯେଉଁମାନେ କଳ-ପାହାଚରେ ଚଢ଼ି ନ ପାରିବେ, ସେମାନଙ୍କ ପାଇଁ ବି ଅଲଗା ପାହାଚସବୁ ଥାଏ । ବୁଢ଼ାବୁଢ଼ୀ ଓ ପିଲାମାନେ ସେମିତି ପାହାଚରେ ଧୀରେ ଧୀରେ ଚଢ଼ି ଉପରକୁ ଉଠନ୍ତି ବା ତଳକୁ ଓହ୍ଲାନ୍ତି ।

ସୁପର ମାର୍କେଟସବୁରେ ଗହଳି ଖୁବ୍ ବେଶୀ । ମାଆମାନେ ବି ପିଲାଙ୍କ ଶୋଇବା ଗାଡ଼ି (ପ୍ରାମ୍)ରେ ଛୋଟ ପିଲାମାନଙ୍କୁ ଧରି ବଜାର ସଉଦା କରିବା ପାଇଁ ଆସିଥାନ୍ତି । କଣ୍ଟେଇ ରଖା ହୋଇଥିବା ଜାଗାରେ ଛୋଟ ପିଲାଙ୍କର କି ଭିଡ଼ !

ବାବୁ ଓ ପାପୁଙ୍କ ବାପା ଦୋକାନରୁ ପାଉଁରୁଟି, ଲହୁଣୀ, ଆଳୁ, ପିଆଜ, ଗାଜର, ସେଓ, ଅଣ୍ଡା ଓ ଆଉ କେତୋଟି ଜିନିଷ କିଣିଲେ । ବାବୁ ଓ ପାପୁ ଝୁଲାରେ ଭଆର 'ପାଣ୍ଡା' ବା ଭାଲୁର କଣ୍ଢେଇଟିଏ ଓ ଦୁଇଟି ଆଇସ୍‌କ୍ରିମ୍ କିଣିଲେ । ଆଇସ୍‌କ୍ରିମ୍ ଖାଇ ଖାଇ ଘରକୁ ଫେରିଲାବେଳେ ସେମାନେ ଭାବୁଥାନ୍ତି 'ସବୁ ଶନିବାର ଦିନ ଆମେ ଏଣିକି ସୁପର୍ ମାର୍କେଟ ଆସିବା ।'

## ବିଲାତରେ ସେମାନଙ୍କ ସ୍କୁଲ

ବାବୁ ଓ ପାପୁ ବିଲାତରେ ପହଞ୍ଚିବା ଆଗରୁ ଗୋଟିଏ ପ୍ରାଇମେରି ସ୍କୁଲରେ ସେମାନଙ୍କ ନାମ ଲେଖା ହୋଇ ସାରିଥାଏ । ସ୍କୁଲଟିର ନାଁଆ ସେଣ୍ଟ୍ ଷ୍ଟିଫେନ୍ସ ପ୍ରାଇମେରି ସ୍କୁଲ । ସ୍କୁଲଟି ସେମାନଙ୍କ ଘରଠାରୁ ବେଶୀ ବାଟ ନୁହେଁ । ବିଲାତ ଦେଶର ଆଇନ୍ ଅନୁସାରେ ସବୁ ପିଲାମାନେ ସ୍କୁଲକୁ ଯାଆନ୍ତି । ପିଲାମାନେ ଯେଉଁଠି ରହନ୍ତି, ସେଇ ଅଞ୍ଚଳର ସ୍କୁଲରେ ସେମାନେ ପଢ଼ନ୍ତି । କୌଣସି ପିଲାକୁ ସ୍କୁଲରୁ ଫେରାଇ ଦିଆହୁଏ ନାହିଁ ।

ସ୍କୁଲକୁ ଗଲେ କେତେ ନୂଆ ସାଙ୍ଗ ମିଳିବେ, କେତେ ନୂଆ ନୂଆ ଖେଳ ଖେଳହେବ ତେଣୁ ବାବୁ ଓ ପାପୁ ସ୍କୁଲକୁ ଯିବାଦିନ ଭାରି ଖୁସି । କିନ୍ତୁ ପାପୁକୁ ମୋଟେ ଇଂରାଜୀ ଆସୁନ ଥାଏ । ସେଠି ତ ସବୁପିଲା ଇଂରାଜୀ କହନ୍ତି । ପାପୁ ବିଚରା କରିବ କ'ଣ ?

କିନ୍ତୁ ସ୍କୁଲରେ ପାପୁର କିଛି ଅସୁବିଧା ହେଲା ନାହିଁ । ଅଳ୍ପଦିନ ଭିତରେ ସେ ଖୁବ୍ ଭଲ ଇଂରାଜୀ ଶିଖିଗଲା । ବାବୁ ତ ଆଗରୁ ଇଂରାଜୀ ଜାଣିଥିଲା । ପିଲାଦୁହେଁ ଠିକ୍ ଇଂରେଜ ପିଲାଙ୍କ ପରି କଥା କହିପାରିଲେ । ତାପରେ ଇଂରେଜ ପିଲାଙ୍କ ସଙ୍ଗେ ମିଳାମିଶା କରିବାରେ ଖେଳିବାରେ ସେମାନଙ୍କର କିଛି ଅସୁବିଧା ହେଲାନାହିଁ ।

ବିଲାତରେ ସ୍କୁଲଗୁଡ଼ିକରେ ଏମିତି ସୁନ୍ଦର ପଢ଼ାହୁଏ ଯେ ସ୍କୁଲକୁ ଯିବାକୁ କେହି ଡରନ୍ତି ନାହିଁ । ସ୍କୁଲରେ ସବୁଦିନ 'ମିସ୍'ମାନେ ମଜା ମଜା ଗପ କହନ୍ତି । ତା ଛଡ଼ା ପିଲାମାନଙ୍କ ପାଇଁ ଅନେକ ସୁନ୍ଦର ସୁନ୍ଦର ରଙ୍ଗୀନ ଚିତ୍ରରେ ଭରା ବହି ଥାଏ । ପିଲାମାନେ ନିଜ ଇଚ୍ଛା ଅନୁସାରେ ବହି ସବୁ ଘରକୁ ନିଅନ୍ତି ଓ ପଢ଼ି ସାରି ଠିକ୍ ସମୟରେ ଫେରାଇ ଦିଅନ୍ତି ।

ଯେଉଁ ପିଲାକୁ ଯେଉଁ ପାଠ ଭଲଲାଗେ, ସେ ସେହି ପାଠ ଭଲକରି ପଢ଼ିପାରେ । ବାବୁର ଚିତ୍ର ଆଙ୍କିବାରେ ଖୁବ୍ ମନ । ତେଣୁ, ସ୍କୁଲର ଡ୍ରଇଂ ଶିକ୍ଷକ ମିଷ୍ଟର ପେଗାଙ୍କ ପାଖରେ ସେ ଚିତ୍ର ଆଙ୍କିବା ଶିଖିଲା । ଯେଉଁମାନେ ଭଲ ଚିତ୍ର ଆଙ୍କନ୍ତି, ସ୍କୁଲ କାନ୍ଥରେ ସେମାନଙ୍କ ଚିତ୍ରସବୁ ଲଗାଇ ଦିଆଯାଏ । ସବୁ ପିଲା, ଶିକ୍ଷକ ଓ ସ୍କୁଲକୁ ଆସୁଥିବା ପିଲାମାନଙ୍କ ବାପା ମାଆମାନେ ସେହି ଚିତ୍ରସବୁ ଦେଖି ଖୁସି ହୁଅନ୍ତି । ବାବୁର ଗୋଟିଏ ଚିତ୍ର କ୍ୟାଣ୍ଟେର୍‌ବେରିର ସ୍କୁଲପିଲାମାନଙ୍କ ଚିତ୍ର ପ୍ରଦର୍ଶନୀରେ ଦେଖାହେଲା । ଏଥିରେ ସେ ଖୁବ୍ ଖୁସୀ ହେଲା ।

ପାଠପଢ଼ା ସାଙ୍ଗକୁ ସ୍କୁଲରେ ପିଲାମାନେ ଅନେକ ହାତ କାମ ବି କରନ୍ତି । ରଙ୍ଗୀନ୍ କାଗଜ, କନା, ଭୁଷା, ଅଖା ଓ ମାଟିରେ ଅନେକ ସୁନ୍ଦର ସୁନ୍ଦର ଜିନିଷ ତିଆରି କରନ୍ତି । ପିଲାମାନେ ତିଆରି କରୁଥିବା ଜିନିଷ ସେମାନେ ବେଳେ ବେଳେ ଘରକୁ ଆଣି ବାପା-ମାଆଙ୍କୁ ଦେଖାନ୍ତି ।

ପିଲାମାନେ ଖେଳିବା ପାଇଁ ଖେଳ ପଡ଼ିଆରେ ଅନେକ ଖେଳ ସରଞ୍ଜାମ ଥାଏ । ଦୋଳି, ସି-ସ ( ତଳ ଉପର ହେବାପାଇଁ ପଟା ) ସାଙ୍ଗକୁ ଫୁଟ୍‌ବଲ୍, କ୍ରିକେଟ୍, ରିଂ ବଲ୍ ପ୍ରଭୃତି ଖେଳ ହୁଏ । ସ୍କୁଲରେ ଟିଫିନ୍‌ବେଳେ ଖାଇବାପାଇଁ ଦିଆଯାଏ । ଖାଇବା, ଖେଳିବା ଓ ଗପ ଶୁଣିବା ଭିତରେ ସ୍କୁଲ ସମୟ କେତେବେଳେ କଟିଯାଏ, କେହି ଜାଣି ପାରନ୍ତି ନାହିଁ ।

ପିଲାମାନେ ଯେମିତି ସେମାନଙ୍କର ଗୃହ ପାଖର ଦୁନିଆକୁ ଭଲକରି ଦେଖିବେ ଓ ଆପେ ଆପେ ନୂଆ ନୂଆ ଜିନିଷ ଶିଖିପାରିବେ, ସେଥିପାଇଁ ସ୍କୁଲ ଶିକ୍ଷକମାନେ ପିଲାମାନଙ୍କୁ ଉତ୍ସାହ ଦିଅନ୍ତି । ସ୍କୁଲରେ ସମୁଦ୍ର କୂଳରୁ ମିଳୁଥିବା ଶଙ୍ଖ, ଶାମୁକା ଓ ଜୀବଜନ୍ତୁଙ୍କ ହାଡ଼ ସବୁ ରଖାଯାଇଥାଏ । ତୁମେମାନେ ଜାଣ, ଇଂଲଣ୍ଡ ଦେଶଟି ଗୋଟିଏ ଦ୍ୱୀପ । ଏହାର ଚାରିପାଖରେ ସମୁଦ୍ର ଘେରି ରହିଛି । ଶହ ଶହ ବର୍ଷ ଧରି ଇଂରେଜମାନେ ସମୁଦ୍ର ପଥରେ ଅନ୍ୟ ଦେଶମାନଙ୍କ ସଙ୍ଗେ ବ୍ୟବସାୟ ବାଣିଜ୍ୟ କରି ନିଜ ଦେଶକୁ ବହୁ ଧନ ସମ୍ପତ୍ତି ଆଣି ଧନୀ ହୋଇଛନ୍ତି । ଭାରତକୁ ମଧ୍ୟ ଇଂରେଜମାନେ ସମୁଦ୍ର ପଥ ଦେଇ ବ୍ୟବସାୟ କରିବାକୁ ଆସିଥିଲେ । ସେମାନେ ଯେତେବେଳେ ଦେଖିଲେ, ଭାରତର ଲୋକେ ନିଜ ନିଜ ଭିତରେ ଝଗଡ଼ା କରୁଛନ୍ତି ଓ ସେମାନଙ୍କର ଭଲ ସେନାବାହିନୀ ନାହିଁ, ସେମାନେ ଭାରତୀୟଙ୍କଠାରୁ









( ବଲାତରେ ସେମାନଙ୍କ ସ୍କୁଲ୍ ପିଲା କେତୋଟି ଜନଷ ତଆର କରଛନ୍ତ । )

ଶାସନ କ୍ଷମତା ଛଡ଼ାଇ ନେଲେ । ସେମାନେ ମୋଟ ଉପରେ ଦୁଇ ଶହ ବର୍ଷ ଭାରତ ଶାସନ କରିଥିଲେ । ୧୯୪୭ରେ ଭାରତ ସ୍ୱାଧୀନ ହେଲା ପରେ ଭାରତର ଲୋକେ ନିଜ ଦେଶକୁ ନିଜେ ଶାସନ କରୁଛନ୍ତି ।

ଆଗେ ଇଂରେଜମାନେ ଯେଉଁ ଦେଶ ସବୁକୁ ଶାସନ କରୁଥିଲେ, ଏବେ ସେଥିରୁ ଅଧିକାଂଶ ସ୍ୱାଧୀନ ହୋଇଗଲେଣି । କିନ୍ତୁ ଇଂରେଜମାନେ ବହୁ ଦେଶ ସହିତ ବ୍ୟବସାୟ ବାଣିଜ୍ୟ କରନ୍ତି । ଇଂରେଜମାନେ ଭଲ ବ୍ୟବସାୟୀ ଜାତି ବୋଲି ଜଣାଶୁଣା । ବ୍ୟବସାୟ ବାଣିଜ୍ୟ ( ଓ ବିଭିନ୍ନ ଶାସନ କରିବା ପାଇଁ ଦେଶ ଶାସନ ) କରିବାପାଇଁ ଇଂରେଜମାନେ ସମୁଦ୍ର ପଥରେ ବିଭିନ୍ନ ଦେଶକୁ ଯାଇଥିଲେ । ତେଣୁ ସେମାନେ ଧନୀ ଓ ବଡ଼ ହେବା ମୂଳରେ ଅଛି ସମୁଦ୍ର ।

ଇଂରେଜମାନେ ସମୁଦ୍ର ବିଷୟରେ ଅନେକ ଗପ ଶୁଣନ୍ତି । ପିଲାମାନେ ଯେମିତି ସମୁଦ୍ର ବିଷୟରେ ଜାଣିବେ, ସେଥିପାଇଁ ଶିକ୍ଷକମାନେ ଦୃଷ୍ଟି ରଖନ୍ତି । ସ୍କୁଲମାନଙ୍କରେ ଓ ସମୁଦ୍ରକୂଳରେ ମିଳୁଥିବା ଜିନିଷ ସବୁ ରଖାଯାଇଥାଏ । ଟା'ଛୁଟି ଖରା ପାଗ ହେଲେ ବେଳେ ବେଳେ ପିଲାମାନଙ୍କୁ ସମୁଦ୍ର କୂଳକୁ ବୁଲିବାକୁ ନିଆଯାଏ ।

ବାବୁ ଓ ପାପୁ ସେମାନଙ୍କ ସ୍କୁଲ ପିଲାଙ୍କ ସଙ୍ଗେ କେତେଥର ଥିଏଟର୍ ଓ ସିନେମା ଦେଖିବାକୁ ଯାଇଥିଲେ । ଥରେ ଦି'ଥର ସେମାନେ ଯାଦୁଘର ବା ମିଉଜିଅମ୍ ବି ଯାଇଥିଲେ । ବିଲାତର ପିଲାମାନେ ଯେମିତି ଖାଲି ବହି ଘୋଷିବେ ନାହିଁ, ବହି ପଢ଼ା ସାଙ୍ଗକୁ ବାହାର ଦୁନିଆରୁ ଅନେକ କଥା ଶିଖିପାରିବେ, ପାଠ ସାଙ୍ଗକୁ ଶାଠରେ ବି ଧୂରନ୍ଧର ହୋଇ-ପାରିବେ, ଏଥିପ୍ରତି ପିଲାମାନଙ୍କ ବାପା-ମାଆ ଓ ଶ୍ରେଣୀ ଶିକ୍ଷକ ସବୁବେଳେ ଦୃଷ୍ଟି ଦିଅନ୍ତି ।

ସେଥିପାଇଁ ଇଂରେଜ ଜାତି ଜ୍ଞାନ ବିଜ୍ଞାନ ଠାରୁ ଆରମ୍ଭ କରି ଖେଳ-କସରତ, ପାହାଡ଼ ଚଢ଼ା, ସମୁଦ୍ର ପହଁରି ଯିବା, ସବୁଥିରେ ପୃଥିବୀରେ ଆଗୁଆ ହୋଇ ଆସିଛି ।

## ତୁମର ଗରମ ଦେଶ, ଆମର ଥଣ୍ଡା ଦେଶ :

ଯେଉଁଦିନ ବାବୁ ଓ ପାପୁ ସେମାନଙ୍କ ମାଆଙ୍କ ସଙ୍ଗେ ସ୍କୁଲକୁ ଗଲେ, ସେଦିନ ଗୋଟିଏ ମଜା କଥା ହେଲା । ସେମାନଙ୍କୁ ଦେଖି ଇଂରେଜ ପିଲାମାନେ ଜାଣି ପାରିଲେ,

ପିଲା ଦୁ'ଜଣ ନଷ୍ଟ ପ୍ରାୟ ଭାରତରୁ ଆସିଛନ୍ତି । କାରଣ ସେମାନଙ୍କ ଦେହର ରଙ୍ଗ ସାବନା । ପୁଣି ମାଆ ଶାଢ଼ୀ ପିନ୍ଧିଥିଲେ । ତେଣୁ ସମସ୍ତେ ତାଳମାର ଏକାସଙ୍ଗେ ପାଟି କରିବାକୁ ଲାଗିଲେ 'ତୁମର ଗରମ ଦେଶ, ଆମର ଥଣ୍ଡା ଦେଶ' । ଭାରତ ଯେ ଗରମ ଦେଶ, ଏକଥା ସେମାନେ ଜାଣିଥିଲେ ।

ବାବୁ ଓ ପାପୁଙ୍କ ମାଆ ତା' ପରଦିନ ପିଲାମାନଙ୍କ ସ୍କୁଲକୁ ଗଲାବେଳେ 'ମିସ୍' ତାଙ୍କୁ ଶ୍ରେଣୀକୁ ଡାକନେଲେ । ପିଲାମାନେ ଶ୍ରେଣୀରେ ଜଣେ ଅତିଥି ଦେଖି ଭାରି ଖୁସି ହେଲେ । ସେମାନଙ୍କ ଦେଶରେ ତ ସ୍ତ୍ରୀଲୋକମାନେ ଶାଢ଼ୀ ପିନ୍ଧନ୍ତି ନାହିଁ । ତେଣୁ ଶାଢ଼ୀ କେମିତି ପିନ୍ଧନ୍ତି ବୋଲି ସେମାନେ ପଚାରିଲେ । ବାବୁ-ପାପୁଙ୍କ ମାଆ ପିଲାମାନଙ୍କୁ କେମିତି ଶାଢ଼ୀ ପିନ୍ଧନ୍ତି, ବୁଝାଇ ଦେଲେ ।

କୌଣସି ନୂଆ ଲୋକ ଦେଖିଲେ ଇଂରେଜ ପିଲାମାନେ ଲାଜ କରନ୍ତି ନାହିଁ । ନୂଆ ଲୋକ ସଙ୍ଗେ କଥା କହିଲେ, ନୂଆ କିଛି ଶିଖିଲେ ସେମାନେ ଖୁସି ହୁଅନ୍ତି ।

## ଶ୍ରୀମତୀ ହଜିନ୍‌ବଥାମଙ୍କ ପାହାଡ଼ୀ ମୂଷା :

ଦିନେ ବାବୁ ଓ ପାପୁଙ୍କ ବାପା ସେଣ୍ଟ ଷ୍ଟିଫେନ୍‌ସ୍ ପ୍ରାଇମେରୀ ସ୍କୁଲର ଜଣେ ମିସ୍ ଶ୍ରୀମତୀ ହଜିନ୍‌ବଥାମ୍‌ଙ୍କଠାରୁ ଖଣ୍ଡିଏ ଚିଠି ପାଇଲେ । ଚିଠିରେ ଲେଖାଥିଲା, 'ଏଇ ଶନିବାର ଦିନ ଆମ ସ୍କୁଲର ପାହାଡ଼ୀ ମୂଷାଟି ବାବୁ ଓ ପାପୁଙ୍କ ପାଖରେ ରହିବ । ପିଲାମାନେ ମୂଷାକୁ ଖାଇବାକୁ ଦେବେ । ମୁଁ ମୂଷାଟିକୁ ଶୁକ୍ରବାର ସଞ୍ଜରେ ଆପଣଙ୍କ ଘରେ ଛାଡ଼ିଦେଇ ଆସିବି ଓ ସୋମବାର ସକାଳେ ସ୍କୁଲକୁ ନେଇ ଆସିବି ।'

ପିଲାମାନେ ଯେପରି ଜୀବଜନ୍ତୁଙ୍କ ବିଷୟରେ ଜାଣିବେ ଓ ସେମାନଙ୍କୁ ଭଲପାଇବାକୁ ଶିଖିବେ, ସେଥିପାଇଁ ବିଲାତରେ ସମସ୍ତେ ଦୃଷ୍ଟି ଦିଅନ୍ତି । କେତେକ ସ୍କୁଲରେ ପାହାଡ଼ୀ ମୂଷା, ଠେକୁଆ, ଝିଙ୍କ ବା ଅନ୍ୟ ଜୀବଜନ୍ତୁ ପୋଷା ହୋଇଥାନ୍ତି । ପିଲାମାନେ ସେମାନଙ୍କୁ ଦେଖି ଖୁସୀ ହୁଅନ୍ତି ।

ବିଲାତରେ ଲୋକେ ବହୁ ପ୍ରକାର ପୋଷା ଜନ୍ତୁ ରଖନ୍ତି । ସବୁଠାରୁ ବେଶୀ ଲୋକ ରଖନ୍ତି କୁକୁର । ଯେତେବେଳେ ବଜାର ବୁଲି ବାହାରିଲେ ତୁମେ ଦେଖିବ, ଅନେକ ଲୋକ

ସେମାନଙ୍କ କୁକୁରମାନଙ୍କୁ ସାଙ୍ଗରେ ଧରି ରାସ୍ତାରେ ବୁଲୁଥାନ୍ତି । ଏତେ ସୁନ୍ଦର ଓ ଏତେ ଜାତିର କୁକୁର ଆଉ କେଉଁ ଦେଶରେ ମିଳିବା କଠିନ । କୁକୁରମାନଙ୍କୁ ଇଂରେଜ ଲୋକେ ଏତେ ଭଲ ପାଆନ୍ତି ଯେ କେହି କେହି ସେମାନଙ୍କୁ ନିଜ ବାସନରୁ ଖୁଆନ୍ତି ଓ ନିଜ ପାଖରେ ଶୁଆନ୍ତି । ବେଳେ ବେଳେ ଆଖିରେ ପଡ଼େ, ଘରର କାଚ ଝରକା ପଛପଟେ କଣ୍ଢେଇପରି ସୁନ୍ଦର କୁକୁରଟିଏ ଚୁପ୍‌ଚାପ୍ ବସି ରାସ୍ତାଆଡ଼େ ଅନାଇ ରହିଛି !

କୁକୁର ଛଡ଼ା ବିଲାତରେ ଠେକୁଆ· ପାହାଡ଼ୀ ମୂଷା, ଛଟ୍ ଘୋଡ଼ା ଏମିତି କି ଗଧକୁ ବି କେହି କେହି ପୋଷିଥାନ୍ତି । ଅନେକ ଲୋକ ଚଢ଼େଇ ମଧ୍ୟ ରଖନ୍ତି । ପୋଷା ପଶୁ ପକ୍ଷୀ ବିକ୍ରୀ କରିବା ପାଇଁ ଅନେକ ଦୋକାନ ଅଛି । ମାଗଣାରେ ବି ଅନେକ ଲୋକ ଠେକୁଆ ଛୁଆ ବା ଅନ୍ୟ ଜୀବଜନ୍ତୁ ଦେଇ ଦିଅନ୍ତି । ଜୀବଜନ୍ତୁଙ୍କ ଖାଦ୍ୟ ବଜାରରେ ସୁବିଧାରେ ମିଳେ ।

ବାବୁ ତା ବାପାଙ୍କୁ ଲଗାଇଲା, 'ଆମେ ବିଲାତରୁ ଗୋଟିଏ କୁକୁର ଆମ ଦେଶକୁ ନେବା ।' ତା' ବାପା ରାଜି ହେଲେ ନାହିଁ । ଗୋଟିଏ ଦେଶରୁ ଆଉ ଗୋଟିଏ ଜୀବଜନ୍ତୁ ଆଣିଲେ ତୁମକୁ ଉଭୟ ଦେଶର ସରକାରଙ୍କ ଅନୁମତି ନେବାକୁ ପଡ଼ିବ । ତା ଛଡ଼ା ବିଲାତରୁ ଗୋଟିଏ କୁକୁର ଭାରତକୁ ଆଣିଲେ ତା' ପାଇଁ ଉଡ଼ାଜାହାଜ ଭଡ଼ା କେତେ ପଡ଼ିବ ଜାଣ ? ପ୍ରାୟ ସାତ ହଜାର ଟଙ୍କା । ଏତେ ଟଙ୍କା ଖର୍ଚ୍ଚ କରି ବିଲାତରୁ ଭାରତକୁ କୁକୁରଟିଏ ଆଣିବା ବୋକାମି ନୁହେଁ ତ ଆଉ କ'ଣ ?

## ହାତୀ, ମହାବଳ ବାଘ ଓ ମହାରାଜା :

ଥରେ ପାପୁ ତାଙ୍କ ସ୍କୁଲରୁ ଭାରତ ବିଷୟରେ ଗୋଟିଏ ବହି ଆଣିଥିଲା । ଜଣେ ଇଂରେଜ ଲେଖକ ସେ ବହିଟି ଲେଖିଥିଲେ । ସେଥିରେ କୁହା ଯାଇଥିଲା, ଭାରତ ହାତୀ, ମହାବଳ ବାଘ ଓ ମହାରାଜାମାନଙ୍କ ଦେଶ । ବହିରେ ହାତୀ, ମହାବଳ ବାଘ ଓ ମହାରାଜା-ମାନଙ୍କର ଫଟ ଦିଆ ଯାଇଥିଲା । ମହାରାଜା ଜରିର ଚକ୍ ଚକ୍ ପୋଷାକ ପିନ୍ଧିଥିଲେ ଓ ମୁଣ୍ଡରେ ଅତି ସୁନ୍ଦର ମୁକୁଟଟିଏ ଲଗାଇଥିଲେ ।

ପାପୁ ବହିଟିକୁ ତା' ବାପାଙ୍କୁ ଦେଖାଇଲା । କହିଲା, "ବାପା, ମୁଁ ତ କେବେ ଭାରତରେ ମହାରାଜା ଦେଖିନାହିଁ । ମୋତେ ମୋ ସାଙ୍ଗମାନେ କହୁଛନ୍ତି, ତୁମ ଦେଶରେ

ଅନେକ ମହାରଜା ଅଛନ୍ତି । ତୁମେ ସେମାନଙ୍କୁ ଦେଖିଥିବ ।" ବାପା କହିଲେ, "ହଁ, ଆମ ଦେଶରେ ଆଗେ ରଜାମାନେ ଦେଶ ଶାସନ କରୁଥିଲେ । ଏବେ ବିଲାତ ପରି ଆମଦେଶରେ ଲୋକେ ନିଜନିଜର ସରକାର ଗଢ଼ିଛନ୍ତି । ଆଉ ରଜା ମହାରଜାମାନେ ନାହାନ୍ତି ।"

"ତେବେ ଭାରତ ମହାରଜାମାନଙ୍କର ଦେଶ ବୋଲି ଇଂରେଜ ଲେଖକ କାହିଁକି ଲେଖିଛନ୍ତି ?" ପାପୁ ପଚାରିଲା ।

ବାପା ଟିକିଏ ସମୟ ଚୁପ୍ ରହିଲେ । କହିଲେ, "ଆମ ଭାରତ ବିଲାତଠାରୁ ବହୁ ଗୁଣରେ ଅଲଗା । ଆମର ଜଳବାୟୁ, ଗଛଲତା, ପଶୁ ପକ୍ଷୀ ସବୁ ଅଲଗା । ପୁଣି ଆମ ଦେଶର ଲୋକେ ଇଂରେଜ ଲୋକଙ୍କ ତୁଳନାରେ ଖୁବ୍ ଗରିବ । ତେଣୁ ଅନେକ ସମୟରେ ଇଂରେଜ ଲୋକେ ଆମ ଦେଶ ବିଷୟରେ ଭୁଲ ଧାରଣାମାନ ପୋଷିଥାନ୍ତି । ସେମାନେ ଆମ ଦେଶକୁ ଠିକ୍ ବୁଝି ନ ପାରି ଗୋଟିଏ ଅଦ୍ଭୁତ ବିଚିତ୍ର ଦେଶ ବୋଲି ଭାବନ୍ତି । ବିଲାତରେ ହାତୀ, ବାଘ, ହାତୀ ପ୍ରଭୃତି ପଶୁ ନାହାନ୍ତି । ପୁଣି ଆମ ଦେଶର ରଜାମାନଙ୍କ ଚାଲିଚଳଣ, ପୋଷାକ —ଏସବୁ ଇଂରେଜ ଲୋକଙ୍କୁ ଖୁବ୍ ବିଚିତ୍ର ମନେହୁଏ । ତେଣୁ କେହି କେହି ଭାରତ କହିଲେ, ହାତୀ, ମହାବଳ ବାଘ ଓ ମହାରଜାମାନଙ୍କୁ ହିଁ ବୁଝନ୍ତି ।"

ବାବୁ ଓ ପାପୁଙ୍କୁ ତାଙ୍କ ସାଙ୍ଗମାନେ ବେଳେ ବେଳେ ଭାରତ ବିଷୟରେ କହୁଥିଲେ, 'ତୁମର କି ମଜା !' କିମ୍ବା 'ତୁମ ଦେଶରେ ଆମ୍ବ ଓ ନଡ଼ିଆ ମିଳେ । କି ବଢ଼ିଆ ଫଳ !'

କିନ୍ତୁ ବିଲାତର ଅନେକ ଲୋକ ଭାରତକୁ ଭଲ ପାଆନ୍ତି ନାହିଁ । ଭାରତରେ କାହିଁକି ଏତେ ଭିକାରି ଅଛନ୍ତି ଓ ଭାରତର ରାସ୍ତାଘାଟ କାହିଁକି ଏତେ ମଇଳା ବୋଲି ସେମାନେ ପଚାରନ୍ତି । ତା'ଛଡ଼ା ବିଲାତରେ କଳା ଲୋକମାନଙ୍କୁ ଅନେକ ଇଂରେଜ ଲୋକ ମନେ ମନେ ଘୃଣା କରନ୍ତି । କଳା ରଙ୍ଗର ଲୋକେ ଗୋରା ଲୋକଙ୍କ ଠାରୁ ହୀନ ବୋଲି ସେମାନଙ୍କ ଧାରଣା । ଥରେ ଦୁ'ଥର ବାବୁ-ପାପୁଙ୍କୁ କେହି କେହି 'ବ୍ଲାକ' ବା 'କଳା' ବୋଲି ଡାକିଥିଲେ । ଏହାଶୁଣି ମନକଷ୍ଟ ହେବା କଥା । ଦିନେ ଦୁହେଁ ବାପାଙ୍କୁ ଏକଥା କହିଲେ ।

ବାପା କହିଲେ, "ବିଲାତ ଗୋଟିଏ ଅତି ବଡ଼ ଓ ପୁରୁଣା ଦେଶ । ପୃଥିବୀର ଅନ୍ୟ ଦେଶମାନେ ବିଲାତରୁ ଅନେକ କିଛି ଶିଖିଛନ୍ତି କିନ୍ତୁ ସବୁ ଦେଶରେ ଭଲ ଓ ମନ୍ଦ ଉଭୟ ଅଛି । ଆମ ଦେଶ ଗରିବ ଓ ଆମ ଦେଶରେ ବହୁତ ଭିକାରି ଅଛନ୍ତି, ଏକଥା ସେମିତି ସତ,

ବିଲାତରେ ଅନେକ ଲୋକ କଳା ଲୋକଙ୍କୁ ଭଲ ନ ପାଇବା ବି ସେମିତି ଯାତ । ଆମର ଅନ୍ୟ ଦେଶରୁ ଭଲ କଥା ଶିଖିବା ଉଚିତ । ତୁମକୁ କେହି କେହି 'କଳା' ବୋଲି ଗାଳିଦେଲେ ତୁମେମାନେ ସେମାନଙ୍କୁ ଗାଳିଦେବା ଉଚିତ ନୁହେଁ । ତୁମେ ସେମାନଙ୍କ କଥାରେ କାନ ନ ଦେବା ଭଲ ।"

## ଖ୍ରୀସ୍ ଓ ନୀଲ୍ ପିଆଜି ଖାଇବାକୁ ଭଲପାଆନ୍ତି :

ଥରେ ଦିଥର ସିନା ବାବୁ ଓ ପାପୁଙ୍କୁ କେହି କେହି ଇଂରେଜ ପିଲା 'ବ୍ଲାକ' ବୋଲି ଚିଡ଼େଇଲେ, କିନ୍ତୁ ମୋଟାମୋଟି ବାବୁ ଓ ପାପୁଙ୍କର ବହୁତ ଇଂରେଜ ସାଙ୍ଗ ଥିଲେ । ସେମାନଙ୍କ ସଙ୍ଗେ ସେମାନେ ଫୁଟ୍‌ବଲ୍, କ୍ରିକେଟ୍, ରିଂ ବଲ୍ ପ୍ରଭୃତି ଖେଳୁଥିଲେ । ବାବୁ କେତେଥର ଇଂରେଜ ପିଲାଙ୍କ ସଙ୍ଗେ ଝରଣାକୁ ଯାଇ ବନ୍ଶୀରେ ମାଛ ଧରିଥିଲା । ବନ୍ଶୀରେ ମାଛ ଧରିବା ଇଂରେଜ ଲୋକଙ୍କର ଗୋଟିଏ ବଡ଼ ସଉକ । ବେଳେ ବେଳେ ବାବୁ ଓ ପାପୁ ସାଙ୍ଗମାନଙ୍କ ସାଥୀରେ ଜଙ୍ଗଲକୁ ଯାଇ ବାଦାମ ଓ ବ୍ଲାକ୍‌ବେରି ( ଏକପ୍ରକାର କୋଳି ) ତୋଳୁଥିଲେ । କେହି କେହି ସାଙ୍ଗ ସେମାନଙ୍କ ଜନ୍ମ ଦିନରେ ବାବୁ ଓ ପାପୁଙ୍କୁ ଡାକୁଥିଲେ । ବାବୁ ଓ ପାପୁ ବି ସେମାନଙ୍କ ଜନ୍ମଦିନକୁ ଇଂରେଜ ସାଙ୍ଗମାନଙ୍କୁ ଡାକୁଥିଲେ ।

ଇଂରେଜ ପିଲାମାନେ ସେମାନଙ୍କ ଜନ୍ମ ଦିନଟିକୁ ଭଲଭାବରେ ପାଳନ୍ତି । ବିଭିନ୍ନ ପ୍ରକାର କେକ୍ ( ପିଠା ) ଓ ଫଳ ରସ ସାଙ୍ଗମାନଙ୍କୁ ବାଣ୍ଟନ୍ତି । ତା' ଛଡ଼ା ଯାହାର ଜନ୍ମଦିନ, ସେ ଗୋଟିଏ ବଡ଼ କେକ୍ ଛୁରୀରେ କାଟି ସେଥିରୁ ଖଣ୍ଡେ ନିଜେ ଖାଏ ଓ ବାକି ଖଣ୍ଡ ସବୁ ସାଙ୍ଗପିଲାମାନଙ୍କୁ ଦିଏ । ଏହି କେକ୍‌ଟିକୁ 'ବାର୍ଥ ଡେ କେକ୍' ବା ଜନ୍ମଦିନ ପିଠା କହନ୍ତି । ପିଲାଟିକୁ ଯେତିକି ବର୍ଷ ପୂରିଥାଏ, ସେତିକିଟି ଜଳନ୍ତା ମହମବତୀ ସେ ଫୁଙ୍କି ଲିଭାଇ-ଦିଏ । ସାଙ୍ଗପିଲାମାନେ ପିଲାଟିକୁ ଅନେକ ଉପହାର ଦିଅନ୍ତି ଓ 'ତୁମର ଜନ୍ମଦିନ ସୁଖମୟ ହେଉ' ବା 'ହାପି ବାର୍ଥ ଡେ ଟୁ ୟୁ' ବୋଲି ଗୀତଟିଏ ଗାଆନ୍ତି ।

ବାବୁ ଓ ପାପୁଙ୍କ ଘର ପାଖରେ ସେମାନଙ୍କ ସାଙ୍ଗରେ ପଢ଼ୁଥିଲେ ଦୁଇଟି ପିଲା— ଖ୍ରୀସ୍ ଓ ନୀଲ୍ । ଖ୍ରୀସ୍‌କୁ ପାଞ୍ଚବର୍ଷ, ନୀଲ୍‌କୁ ସାତ ବର୍ଷ । ସେମାନଙ୍କ ମୁଣ୍ଡ ବାଳ ହଳଦିଆ । ଆଖି ଡୋଳା ନେଳି ନେଳି । ସେମାନେ ଥିଲେ ବାବୁ ଓ ପାପୁଙ୍କର ପ୍ରିୟ ସାଙ୍ଗ ।

ଖ୍ରୀସ୍ ଓ ମାଲ୍ ସ୍କୁଲରୁ ଫେରିଲେ ସେମାନଙ୍କ ସାଇକେଲ୍ ନେଇ ପଡ଼ିଆରେ ଚଲାନ୍ତି । ପାଗ ଥଣ୍ଡା ହୋଇଥିଲେ ସେମାନେ ଘର ଭିତରେ ଖେଳନ୍ତି କିମ୍ବା ଟେଲିଭିଜନ୍ ଦେଖନ୍ତି । ଟେଲିଭିଜନ୍ ତୁମ ଭିତରୁ ଅନେକେ ଦେଖି ନ ଥିବ । ଟେଲିଭିଜନ୍ ଯନ୍ତ୍ରରେ ଠିକ୍ ସିନେମାଭଳି ଛବି ଦେଖାଯାଏ । ପ୍ରାୟ ସବୁ ଇଂରେଜ ଲୋକଙ୍କ ଘରେ ଟେଲିଭିଜନ୍ ଥାଏ । ପିଲାଙ୍କଠାରୁ ବୁଢ଼ାଯାଏଁ ସମସ୍ତେ ଘଣ୍ଟା ଘଣ୍ଟା ବସି ଟେଲିଭିଜନ୍ ଦେଖନ୍ତି । ଏହି ଟେଲିଭିଜନ୍ କଥା ତୁମକୁ ପରେ କହିବ ।

ଖ୍ରୀସ୍ ଓ ମାଲ୍ ଦିନେ ଦିନେ ସ୍କୁଲରୁ ଆସି ଘରେ ବହିପତ୍ର ରଖିଦେଇ ବାବୁ ଓ ପାପୁଙ୍କ ଘର ଦୁଆର ଠକ୍‌ଠକ୍ କରନ୍ତି । ବାବୁ ଓ ପାପୁଙ୍କ ମାଆଙ୍କୁ ପଚାରନ୍ତି, 'ସେଇ ଜିନଷଟି ଅଛି ?'

ସେଇ ଜିନଷଟି କ'ଣ ଜାଣିଛ ? ସେଇଟି ହେଲା ପିଆଜ । ବାବୁ ଓ ପାପୁଙ୍କ ମାଆ ଘରେ ବେଳେ ବେଳେ ପିଆଜ ତିଆରି କରନ୍ତି । ଖ୍ରୀସ୍ ଓ ମାଲ୍ କେତେଥର ପିଆଜ ଖାଇଛନ୍ତି । ପିଆଜ ସେମାନଙ୍କୁ ଖୁବ୍ ଭଲଲାଗେ । ଇଂରେଜ ଲୋକଙ୍କ ଘରେ ତ ପିଆଜ ହୁଏନାହିଁ କି ବିଲାତର ଦୋକାନରେ ପିଆଜ ବିକ୍ରୀ ହୁଏ ନାହିଁ । ତେଣୁ ଖ୍ରୀସ୍ ଓ ମାଲ୍ ପିଆଜ ଖାଇବାକୁ ମନ ହେଲେ ବାବୁ ଓ ପାପୁଙ୍କ ଘରକୁ ଆସନ୍ତି ।

ବାବୁ ଓ ପାପୁ ବିଲାତରେ ଥିବାବେଳେ ଇଂରେଜ ଲୋକଙ୍କ ପରି ଖାଦ୍ୟ ଖାଉଥିଲେ । ଇଂରେଜ ଲୋକଙ୍କ ପାଉଁରୁଟି, ଲହୁଣୀ, ଶିମ୍ବମଞ୍ଜି ଓ ବ୍ରୁସେଲସିଝା, ମାଛ, ଗୋରୁ, କୁକୁଡ଼ା ଓ ମେଣ୍ଢାମାଂସ, ସେଓ ପ୍ରଭୃତି ଫଳ ଖା'ନ୍ତି । ବିଭିନ୍ନ ପ୍ରକାର ଫଳରସ ମଧ୍ୟ ସେମାନେ ପିଅନ୍ତି । ଇଂରେଜ ଲୋକେ ପରିବା ଓ ମାଂସକୁ ସିଝାଇ ବା ପୋଡ଼ି ଖାଇବାକୁ ଭଲ ପାଆନ୍ତି । ଏପରି ରାନ୍ଧିଲେ ଖାଦ୍ୟସାର ନଷ୍ଟ ହୁଏନାହିଁ । ସେମାନେ ଆମଭଳି ବହୁତ ତେଲ ଓ ମସଲା ଦେଇ ରାନ୍ଧନ୍ତି ନାହିଁ । ସିଝା ଓ ପୋଡ଼ା ମାଂସ ବା ପରିବା ସାଙ୍ଗରେ ଲୁଣ ଓ ଗୋଲମରିଚ ଗୁଣ୍ଡ ମିଶାଇ ଖା'ନ୍ତି ।

ଆମେ ଭାରତରେ ଭାତ ବା ରୁଟି, ଡାଲି ଓ ତରକାରୀ ପ୍ରଭୃତି ବେଶୀ ଖାଉ । ଦୁଧ, ମାଛ, ମାଂସ ବା ଫଳ ବେଶୀ ଖାଇ ପାରୁନାହିଁ । କିନ୍ତୁ ବିଲାତରେ ଲୋକେ ଦୁଧ, ଛେନା, ଲହୁଣୀ, ମାଂସ, ମାଛ ଓ ଫଳ ପ୍ରଭୃତି ବହୁତ ଖାଇ ପାରନ୍ତି । ତେଣୁ ଇଂରେଜ ଲୋକଙ୍କ

ସ୍ୱାସ୍ଥ୍ୟ ଆମ ଦେଶର ଲୋକଙ୍କ ସ୍ୱାସ୍ଥ୍ୟଠାରୁ ଭଲ । ବାବୁ ଓ ପାପୁ ବିଲାତରେ ରହିବା ଫଳରେ କିଛିଦିନପରେ ସେମାନଙ୍କ ଓଜନ ଟିକିଏ ବଢ଼ିଗଲା ଓ ସେମାନଙ୍କ ସ୍ୱାସ୍ଥ୍ୟ ଆଗଠାରୁ ଭଲ ରହିଲା ।

ବିଲାତରେ ତ ଏବେ ଭାରତରୁ ବହୁତ ଲୋକ ଯାଇ ରହୁଛନ୍ତି । ତେଣୁ ଚାଉଳ, ଡାଲି, ଅଟା, ମସଲା ପ୍ରଭୃତି ବଜାରରେ ସହଜରେ ମିଳୁଛି । ଭାରତର ଲୋକେ ଘରେ ସେମାନଙ୍କ ନିଜ ଦେଶର ଖାଦ୍ୟ ତିଆରି କରନ୍ତି । ବିଲାତରେ ଅନେକ ହୋଟେଲରେ ଭାରତୀୟ ଖାଦ୍ୟ ମିଳେ । ବିଲାତର ରାଜଧାନୀ ଓ ସବୁଠାରୁ ବଡ଼ ସହର ଲଣ୍ଡନରେ ତ ଏମିତି ଅନେକ ହୋଟେଲ ଅଛି । ବହୁତ ଇଂରେଜଲୋକ ବେଳେ ବେଳେ ଏମିତି ହୋଟେଲକୁ ଆସି ଭାରତୀୟଙ୍କ ପରି ଭାତ, ଡାଲି, ତରକାରୀ, ଆଚାର ଓ ପାମ୍ପଡ଼ ପ୍ରଭୃତି ଖାଇବାକୁ ଭଲପା'ନ୍ତି ।

## ଟେଲିଭିଜନ :

ବିଲାତରେ ପହଞ୍ଚିବା ପରେ ବାବୁ ଓ ପାପୁ ଯେତେବେଳେ ଟେଲିଭିଜନ୍ ଦେଖିଲେ, ସେମାନଙ୍କ ଆନନ୍ଦ କହିଲେ ନ ସରେ । ସେମାନେ ତ ଆଗରୁ ଟେଲିଭିଜନ୍ ଦେଖି ନ ଥିଲେ । ଆମ ଦେଶରେ ଖୁବ୍ କମ୍ ଜାଗାରେ ଟେଲିଭିଜନ୍ ଅଛି । କିନ୍ତୁ ବିଲାତରେ ଘରେ ଘରେ ଟେଲିଭିଜନ୍ । ଟେଲିଭିଜନ୍‌ର ଦାମ୍ ବେଶୀ । ତେଣୁ ଯେଉଁମାନେ ନୂଆ ଟେଲିଭିଜନ୍ କିଣି ନ ପାରନ୍ତି, ସେମାନେ ଭଡ଼ାରେ ଟେଲିଭିଜନ୍ ଆଣିପାରନ୍ତି । ବାବୁ ଓ ପାପୁଙ୍କ ବାପା ଭଡ଼ାରେ ଗୋଟିଏ ଟେଲିଭିଜନ୍ ତାଙ୍କ ଘରକୁ ଆଣିଥିଲେ ।

ଆମେ ଯେମିତି ରେଡ଼ିଓରେ ଦୂରର କଥା ଶୁଣିପାରୁ, ସେମିତି ଟେଲିଭିଜନ୍‌ରେ ଦୂରର ଛବି ଦେଖିପାରୁ । କେଉଁଠି ଫୁଟବଲ୍ ଖେଳ ହେଲା, କେଉଁଠି କେଉଁ ନେତା ଭାଷଣ ଦେଲେ, କେଉଁଠି ସର୍କସ କି ନାଟକ ଦେଖାହେଲା—ଘରେ ବସି ଟେଲିଭିଜନ୍‌ରେ ସବୁ ଦେଖିହେବ । ବିଲାତରେ ବହୁତ ସମୟରେ ଥଣ୍ଡା, କୁହୁଡ଼ି, ବରଫଯୋଗୁ ଲୋକେ ଘରୁ ବାହାରି ପାରନ୍ତିନାହିଁ । ତେଣୁ ଘର ଭିତରେ ବସି ମଜାରେ ଟେଲିଭିଜନ୍ ଦେଖନ୍ତି ।

ଟେଲିଭିଜନ୍‌ରେ ପିଲାଠାରୁ ବୁଢ଼ାଯାଏଁ ସମସ୍ତଙ୍କ ପାଇଁ ଛବି ଦେଖାଯାଏ । ବାବୁ ଓ ପାପୁ ସ୍କୁଲରୁ ଫେରିଲାପରେ ଜଳଖିଆ ଖାଇ ଟେଲିଭିଜନ୍ ଆଗରେ ବସି ପଡ଼ନ୍ତି ।

ସେତିକବେଳେ ପିଲାଙ୍କ ପାଇଁ ଗୋଟିଏ ମଜା ଛବି ଥାଏ 'ପ୍ଲେ ସ୍କୁଲ' । ସେଥିରେ କେହି-ଜଣେ ମଜା ଗପ କହେ; ପିଲାମାନେ କେମିତି ଚିତ୍ର ଆଙ୍କିବେ, କଣ୍ଢେଇ ତିଆରି କରିବେ, ଗୀତ ଗାଇ ପାରିବେ, ଏସବୁ ବି ଶିଖାଯାଏ । ତା ଛଡ଼ା ଠେକୁଆ, ଭାଲୁ, ବିଲେଇ, ମୂଷା, କୁକୁଡ଼ା ପ୍ରଭୃତିଙ୍କୁ ନେଇ ଟେଲିଭିଜନ୍‌ରେ କେତେ ପ୍ରକାର କାହାଣୀ ଦେଖାଯାଏ । ଏଇ ଜନ୍ତୁମାନେ ଠିକ୍ ମଣିଷଙ୍କ ପରି କଥା କହନ୍ତି ଓ ଗୋଳମାଳ କରନ୍ତି । ଟେଲିଭିଜନ୍‌ରେ ସେମାନଙ୍କୁ ଦେଖିଲେ ଲାଗେ, ସେମାନେ ଯେମିତି ଠିକ୍ ମଣିଷ ପରି, ଖାଲି ଯାହା ସେମାନଙ୍କ ବାହାରର ଖୋଳଟା ଅଲଗା !

ବାବୁ ଓ ପାପୁ ଟେଲିଭିଜନ୍‌ରେ ଫୁଟବଲ ଓ କ୍ରିକେଟ୍ ଖେଳ ଦେଖିବାକୁ ଭଲ ପାଆନ୍ତି । ଏଇ ଦୁଇଟି ଖେଳ ବିଲାତରେ ଖୁବ୍ ପ୍ରିୟ । ଆମ ଦେଶରେ ବି ଏଇ ଦୁଇଟି ଖେଳକୁ ଏବେ ପିଲାମାନେ ଖୁବ୍ ପସନ୍ଦ କରୁଛନ୍ତି । ଆମେ ଇଂରେଜ ଲୋକଙ୍କଠାରୁ ଏଇ ଖେଳ ଦୁଇଟି ଶିଖିଛୁ କହିଲେ ଭୁଲ୍ ହେବନାହିଁ ।

ପାପୁ ସବୁବେଳେ ତା ବାପାଙ୍କୁ କହୁଥିଲା—"ଆମେ ଭାରତ ଫେରିଗଲାବେଳେ ବିଲାତରୁ ଗୋଟିଏ ଟେଲିଭିଜନ୍ ନେଇଯିବା ଓ ସେଠାରେ ବସି ମଜା ଛବିସବୁ ଦେଖିବା ।" କିନ୍ତୁ ବିଲାତରୁ ଟେଲିଭିଜନ୍‌ଟିଏ ଆଣିଲେ ତ ଭାରତରେ ବସି ବିଲାତର ଛବି ଦେଖିହେବ-ନାହିଁ । ବିଲାତର ଟେଲିଭିଜନ୍‌ମାନଙ୍କରେ ଦେଖାଯାଉଥିବା ଛବି ବିଲାତର ଟେଲିଭିଜନ୍ ଷ୍ଟେସନମାନଙ୍କରୁ ଆସେ । ଏତେ ଦୂରରୁ ଆମେ ବିଲାତର ଛବି ଦେଖି ପାରିବା ନାହିଁ । ଆମ ଦେଶରେ କେଉଁଠି କେଉଁଠି ଟେଲିଭିଜନ୍ ଦେଖିବାର ସୁବିଧା ଅଛି ସତ; କିନ୍ତୁ ବିଲାତ ଭଳି ଏତେ ସୁନ୍ଦର ସୁନ୍ଦର ଛବି ଦିନର ସବୁ ସମୟରେ ଦେଖିବାର ସୁବିଧା ନାହିଁ । ବିଲାତର ଟେଲିଭିଜନ୍‌ମାନଙ୍କରେ ଖାଲି ସେମାନଙ୍କ ଦେଶର କଥା ଦେଖାହୁଏ ନାହିଁ । ପୃଥିବୀର ଅନ୍ୟ ଦେଶମାନଙ୍କ ବିଷୟରେ ବି କେତେ କ'ଣ ଦେଖାହୁଏ । ବାବୁ ଓ ପାପୁ ବିଲାତରେ ଥିବାବେଳେ ଥରେ ଆମ ଓଡ଼ିଶାର କୋଣାର୍କ ମନ୍ଦିର ଟେଲିଭିଜନ୍‌ରେ ଦେଖା ହୋଇଥିଲା । ଦୂର ଦେଶରେ ରହି ନିଜ ଦେଶର ଛବି ଦେଖିଲେ କେଡ଼େ ଖୁସୀ ଲାଗେ, ବୁଝି ପାରୁଛ !

ବିଲାତର ଟେଲିଭିଜନ୍‌ରେ ଯେ ଖାଲି ଖେଳ ଓ ମଜା ମଜା ଛବି ଦେଖାଯାଏ, ତା ନୁହେଁ । ପିଲା ଓ ବଡ଼ ସମସ୍ତଙ୍କ ଦେଖିଲାଭଳି ଅନେକ ଛବି ମଧ୍ୟ ଦେଖାଯାଏ । ଯେଉଁମାନେ

ପଇସା ନ ଥିବାରୁ ବା ଆଉ କେଉଁ କାରଣରୁ ସ୍କୁଲ ବା କଲେଜରେ ପାଠ ପଢ଼ି ପାରନ୍ତି ନାହିଁ, ସେମାନଙ୍କୁ ଟେଲିଭିଜନ୍‌ରେ ପାଠ ପଢ଼ାଯାଏ । ଗଛ ଲତା, କୀଟ ପତଙ୍ଗଙ୍କ ଜୀବନଠାରୁ ମଣିଷ ଚନ୍ଦ୍ରମଣ୍ଡଳକୁ ଯିବା ପର୍ଯ୍ୟନ୍ତ ପୃଥିବୀରେ ଯେଉଁଠାରେ ଯେତେ ଯାହା ଘଟୁଛି, ସେସବୁର ଛବି ତୁମେ ଟେଲିଭିଜନ୍‌ରେ ଦେଖିପାରିବ ।

ଟେଲିଭିଜନ୍‌ରୁ ବହୁତ ଉପକାର ମିଳେ ସତ କିନ୍ତୁ ଖୁବ୍ ବେଶୀ ଟେଲିଭିଜନ୍ ଦେଖିବା ଉଚିତ ନୁହେଁ । ବିଲାତରେ ଅନେକ ଲୋକ ସବୁ କାମ ପଛରେ ପକାଇ ଟେଲିଭିଜନ୍‌ରେ ଖାଲି ମଜା ମଜା ଛବି ଦେଖନ୍ତି । ଟେଲିଭିଜନ୍ ଯେମିତି ସେମାନଙ୍କର ଗୋଟିଏ ନିଶା ! ତାଛଡ଼ା ପିଲାମାନେ ବଡ଼ ମଣିଷଙ୍କ ପାଇଁ ଦେଖା ହେଉଥିବା ଛବିଦେଖିବା ସବୁବେଳେ ଭଲ ନୁହେଁ ।

ବାବୁ ଓ ପାପୁ ବେଳେ ବେଳେ ଘଣ୍ଟା ଘଣ୍ଟା ଧରି ଟେଲିଭିଜନ୍ ଦେଖିଲେ ତାଙ୍କ ବାପା ଓ ମାଆ ସେମାନଙ୍କ ଉପରେ ବିରକ୍ତ ହେଉଥିଲେ । କହୁଥିଲେ, 'ବହୁତ ଟେଲିଭିଜନ୍ ଦେଖିଲେ ଆଖି ଖରାପ ହୁଏ । ତୁମେମାନେ ବାହାରେ ବୁଲିବୁଲି କରିବା ଓ ଖେଳାଖେଳି କରିବା ଉଚିତ ।'

## ବାଦୁଡ଼ି ମଣିଷ, ବଗ୍‌ସ୍‌ବନି, ସିକ୍‌ସ ମିଲିଅନ୍ ଡଲାର୍‌ମ୍ୟାନ୍ :

ଟେଲିଭିଜନ୍‌ରେ ତ ସବୁଦିନ କେତେ ନୂଆ ନୂଆ ପ୍ରକାର ଛବି ଦେଖାଯାଏ । ବାବୁ ଓ ପାପୁ ଏଇ ଛବିମାନଙ୍କ ଭିତରୁ ବାଦୁଡ଼ି ମଣିଷ, ବଗ୍‌ସ୍‌ବନି ଓ ସିକ୍‌ସ ମିଲିଅନ୍ ଡଲାର‌ମ୍ୟାନ୍ ଥିବା ଛବି ସବୁକୁ ବେଶୀ ଭଲପାଇଲେ । ବାଦୁଡ଼ି ମଣିଷର ଦେହଟି ମଣିଷପରି, କିନ୍ତୁ ମୁହଁରେ ସେ ବାଦୁଡ଼ିର ମୁଖାଟିଏ ପିନ୍ଧିଥାଏ । ତା ଦେହରେ ଖୁବ୍ ବଳ । ତେଣୁ ସେ ସମସ୍ତଙ୍କୁ ଅତି ସହଜରେ ହଟାଇ ଦିଏ । ବଗ୍‌ସ୍‌ବନି ଗୋଟିଏ ଠେକୁଆ । ଗୋଟିଏ ଅତି ଭୟଙ୍କର ମଣିଷ ଧରିବ ବୋଲି ଯେତେ ଚେଷ୍ଟା କଲେ ବି ତାକୁ ଧରି ପାରେନାହିଁ । ବଗ୍‌ସ୍‌ବନି ଖୁବ୍ ଶୀଘ୍ର ଦୌଡ଼ିପାରେ ଯେମିତି, ତାର ବୁଦ୍ଧି ବି ସେମିତି ସରସ । ମଣିଷଟି ଯେତେ ଉପାୟରେ ତାକୁ ଧରିବାକୁ ଚେଷ୍ଟାକଲେ ବି ବଗ୍‌ସ୍‌ବନି ତା କବଳରୁ ଖସିଯାଏ । ସିକ୍‌ସ ମିଲିଅନ୍ ଡଲାର୍‌ମ୍ୟାନ୍ ଗୋଟିଏ ମଣିଷ ସତ, କିନ୍ତୁ ତା ହାତ ଓ ଗୋଡ଼ ଭିତରେ ଅତି ଦାମିକା ବୈଜ୍ଞାନିକ ଯନ୍ତ୍ରପାତି ଝଞ୍ଜା ହୋଇଥାଏ । ତେଣୁ ସେ ଅତି ସହଜରେ ବଡ଼ ବଡ଼ ଗଛ ଉପାଡ଼ି ଦିଏ, କୋଠାଘର ସବୁ ଭାଙ୍ଗିଦିଏ । ଏମିତିକି ରେଲ୍‌ଗାଡ଼ିଠାରୁ ଆହୁରି ଜୋର୍‌ରେ ଧାଇଁପାରେ ।



( ବଗ୍‌ସ୍‌ବନ କ୍ରିକେଟ ଖେଳୁଛି )

ଆମ ଦେଶରେ ଯେମିତି ଭୀମ, ଅର୍ଜୁନ, ହନୁମାନ ପ୍ରଭୃତି ବୀରମାନଙ୍କ କଥା ଶୁଣିବାକୁ 'ପିଲମାନେ ଭଲ ପାଆନ୍ତି, ସେମିତି ବିଲାତରେ ପିଲମାନେ ସେମାନଙ୍କ ଦେଶର ବୀରମାନଙ୍କ କଥା ପଢ଼ିବାକୁ ବା ଟେଲିଭିଜନ୍‌ରେ ସେମାନଙ୍କ ଛବି ଦେଖିବାକୁ ଭଲ ପାଆନ୍ତି । ଏଇ ବୀରମାନଙ୍କ ଗପ ଓ ଛବିଥିବା ବହିସବୁ ପିଲମାନେ ବହୁପରିମାଣରେ କିଣନ୍ତି । ଏହି ବୀରମାନଙ୍କ କଣ୍ଢେଇସବୁ ବଜାରରେ ବିକ୍ରୀ ହୁଏ । ପାପୁ ଥରେ ତା ଜନ୍ମଦିନ ପାଇଁ ଗୋଟିଏ ସିକ୍‌ସ ମିଲିଅନ୍ ଡଲାର୍ ମ୍ୟାନ୍ କଣ୍ଢେଇ କିଣିଥିଲା ।

ଆମ ଦେଶରେ ଯେମିତି ପିଲମାନେ ବାଘକୁ ମାମୁଁ, ଭାଲୁଆକୁ ନନା ବୋଲି ଡାକନ୍ତି ଓ ଜୀବଜନ୍ତୁଙ୍କ ବିଷୟରେ ଗପ ଶୁଣିବାକୁ ଭଲ ପାଆନ୍ତି, ବିଲାତରେ ବି ସେମିତି ପିଲମାନେ ସେମାନଙ୍କ ଦେଶର ଜୀବଜନ୍ତୁଙ୍କ ବିଷୟରେ କେତେ ଗପ ଶୁଣନ୍ତି । ଭାଲୁ, ଗଧିଆ, ଘୁଷୁରି ଓ ମେଣ୍ଢାଙ୍କ ବିଷୟରେ ସେମାନଙ୍କ ଦେଶରେ ବହୁତ ମଜାଗପ ଅଛି । ବିଲାତରେ ପିଲମାନଙ୍କ ଭିତରେ ସବୁଠୁ ବେଶୀ ଜଣାଶୁଣା ଗପଟି ହେଉଛି, 'ତିନୋଟି ଭାଲୁ ଓ ଗୋଲ୍‌ଡିଲକ୍' । ସେଇ ଗପଟି ଏଠାରେ କହୁଛି ।

ତିନୋଟି ଭାଲୁ ଜଙ୍ଗଲରେ ରହୁଥାନ୍ତି । ବାପ-ଭାଲୁ, ମାଆ-ଭାଲୁ ଓ ଛୁଆ-ଭାଲୁ । ଦିନେ ସକାଳୁ ସେମାନେ ଜଙ୍ଗଲ ଆଡ଼େ ବୁଲି ଯାଇଥିଲେ । ଘରେ ତିନୋଟି ଥାଳୀରେ ସେମାନଙ୍କ ପାଇଁ ଗରମ ଗରମ ଜାଉ ରଖା ଯାଇଥିଲା । ସେମାନେ ଟିକିଏ ବୁଲାବୁଲି କରି ଫେରିଲେ ଜାଉତକ ଖାଇବା କଥା ।

ଏଣେ କ'ଣ ହେଲାକି, ଗୋଲ୍‌ଡିଲକ୍ ବୋଲି ଗୋଟେ ଝିଅଟିଏ ଭାଲୁମାନଙ୍କ ଘରେ ପଶିଗଲା । ତିନୋଟି ଥାଳୀରେ ଜାଉ ଥୁଆ ହୋଇଥାଏ । ସେ ସବୁଠୁ ଛୋଟ ଥାଳୀରେ ଛୁଆ ଭାଲୁ ପାଇଁ ଥୁଆ ହୋଇଥିବା ଜାଉତକ ଖାଇଦେଲା । ତା'ପରେ ଘରର ଉପର ମହଲାରେ ଛୁଆ ଭାଲୁ ପାଇଁ ପଡ଼ିଥିବା ଶେଯରେ ଶୋଇପଡ଼ିଲା ।

ଭାଲୁମାନେ ଜଙ୍ଗଲରେ ବୁଲାବୁଲି କରି ଫେରି ଦେଖନ୍ତି ତ କିଏ ସେମାନଙ୍କ ଘରେ ପଶି ଛୁଆ ଭାଲୁର ଜାଉତକ ଖାଇଦେଇଛି ! ସେମାନେ ଖୁବ୍ ରାଗିଗଲେ । ଉପର ମହଲାକୁ ଗଲାବେଳକୁ ଝିଅଟିଏ ଛୁଆ ଭାଲୁ ଶେଯରେ ଚୁପ୍‌ଚାପ୍ ଶୋଇଛି ।



( ବାଦୁଡ଼ି ମଣିଷ )

ଭାଲୁମାନଙ୍କ ପାଟି ଗୋଳରେ ଗୋଲ୍‌ଡିଲକ୍ ଉଠିପଡ଼ି ଦୌଡ଼ି ଦୌଡ଼ି ପଳାଇଲା । ସେଇଦିନୁ ସେ ଆଉ ଜଙ୍ଗଲ ଆଡ଼େ ଯାଏ ନାହିଁ ।

ଆମ ଦେଶରେ ପିଲାମାନେ ସେମାନଙ୍କ ଅଜା, ଆଈ, ଜେଜେବାପା, ଜେଜେମାଆଙ୍କ ଠାରୁ ମଜା ମଜା ଗପ ଶୁଣନ୍ତି । ବିଲାତରେ କିନ୍ତୁ ପିଲାମାନେ ଅଜା, ଆଈ, ଜେଜେବାପା, ଜେଜେମାଆଙ୍କଠାରୁ ଗପ ଶୁଣିବାର ସୁବିଧା ନ ଥାଏ । କାରଣ ବୁଢ଼ାବୁଢ଼ୀମାନେ ସେମାନଙ୍କ ପିଲାମାନଙ୍କଠାରୁ ଅଲଗା ରହନ୍ତି । ତେଣୁ ବିଲାତର ପିଲାମାନେ ସେମାନଙ୍କ ଦେଶର ମଜା ଗପ ସବୁ ବହିରେ ପଢ଼ନ୍ତି କିମ୍ବା ଗପର ଛବି ସବୁ ଟେଲିଭିଜନ୍‌ରେ ଦେଖନ୍ତି ।

## ସେମାନେ ଓଡ଼ିଆ ଭୁଲିଗଲେ :

ପାପୁ ବିଲାତ ଗଲାବେଳେ ମୋଟେ ଇଂରାଜୀ ଜାଣି ନ ଥିଲା । ବାବୁ ଅଳ୍ପ ଅଳ୍ପ ଇଂରାଜୀ ଜାଣିଥିଲା । କିନ୍ତୁ ବିଲାତରେ ବର୍ଷଟିଏ ରହିବାପରେ ସେମାନେ ଓଡ଼ିଆ ଭୁଲିଗଲେ । ଘରେ ବି ସେମାନେ ଓଡ଼ିଆରେ କଥା ନ କହି ଇଂରାଜୀରେ କଥା କହିଲେ । ସେମାନଙ୍କ ବାପା ଓ ମାଆଙ୍କ ଛଡ଼ା ଆଉ କାହାଠାରୁ ସେମାନେ ଆଉ ଓଡ଼ିଆ କଥା ଶୁଣିବାକୁ ପାଇଲେ ନାହିଁ । ସ୍କୁଲରେ, ଟେଲିଭିଜନ୍‌ରେ, ବଜାରରେ ସବୁଠି ତ ଇଂରାଜୀ । ସେମାନେ ଇଂରାଜୀ ନ କହି ଆଉ କ'ଣ କରିଥାନ୍ତେ ?

ଯେ କୌଣସି ଭାଷାକୁ ପିଲାଦିନେ ଶିଖିବା ଖୁବ୍ ସହଜ । ବାବୁ ଓ ପାପୁ ଅଳ୍ପଦିନ ଭିତରେ ଯେମିତି ଇଂରାଜୀ ଶିଖିଗଲେ, ସେଥିରେ ତାଙ୍କ ବାପା ଓ ମାଆ ଆଶ୍ଚର୍ଯ୍ୟ ହୋଇଗଲେ । ଠିକ୍ ସେମିତି ଗୋଟିଏ ଇଂରେଜ ପିଲା ଯଦି ଆମ ଓଡ଼ିଶାରେ ରହେ, ତେବେ ସେ ଖୁବ୍ ଶୀଘ୍ର ଓଡ଼ିଆ ଶିଖି ପାରିବ ଓ ଓଡ଼ିଆ ପିଲାମାନଙ୍କ ପରି ଓଡ଼ିଆ କହି ପାରିବ ।

ବେଳେବେଳେ ବିଲାତରେ ରହୁଥିବା କେହି କେହି ଓଡ଼ିଆ ଲୋକ ବାବୁ ଓ ପାପୁଙ୍କ ଘରକୁ ବୁଲି ଆସନ୍ତି । ସେମାନଙ୍କୁ ଦେଖିଲେ ବାବୁ ଓ ପାପୁ ବହୁତ ଖୁସି ହୁଅନ୍ତି । ବିଦେଶରେ ଥିଲାବେଳେ ନିଜଦେଶର ଲୋକଟିଏ ଦେଖିଲେ ବହୁତ ଖୁସି ଲାଗେ । ନିଜଦେଶ, ନିଜ ଭାଷାକୁ, କିଏ ସତେ ଭଲ ନ ପାଏ !

## ସେମାନଙ୍କ ସାଙ୍ଗ ନାଇଜଲ୍ :

ବାବୁ ଓ ପାପୁଙ୍କର ଆଉ ଜଣେ ସାଙ୍ଗର ନାଁଆ ନାଇଜଲ୍ । ସେ ତାର ବାପା, ମାଆ ଓ ସାନ ଭଉଣୀ ଏମ୍ମା ସଙ୍ଗେ ବାବୁ ଓ ପାପୁଙ୍କ ଘରଠାରୁ ଅଳ୍ପ ଦୂରରେ ରହୁଥାଏ । ତାଙ୍କର ଗୋଟିଏ ବଡ଼ କୁକୁର ଥାଏ । ବେଳେବେଳେ ସେ ତାଙ୍କ କୁକୁରକୁ ପାଖ ପଡ଼ିଆକୁ କି ଜଙ୍ଗଲ ଆଡ଼େ ବୁଲାଇ ନିଏ ।

ନାଇଜଲ୍‌ର କ୍ରିକେଟ୍ ଖେଳିବାରେ ଖୁବ୍ ଝୁଙ୍କ୍ । ସ୍କୁଲରୁ ଫେରିବା ପରେ ପରେ ସେ ତାର ବ୍ୟାଟ୍ ଓ ବଲ୍ ନେଇ ବାବୁଙ୍କ ଘରକୁ ଚାଲିଆସେ । ବାବୁ ଓ ସେ ଘରପାଖ ପଡ଼ିଆରେ କ୍ରିକେଟ ଖେଳନ୍ତି । ନାଇଜଲ୍‌ର ଆଉ ଗୋଟିଏ ସଉକ ହେଉଛି ବିଭିନ୍ନ ଦେଶର ଷ୍ଟାମ୍ପ୍ ବା ଡାକଟିକଟ ସଂଗ୍ରହ କରିବା । ବାବୁ ବି ଡାକଟିକଟ ସଂଗ୍ରହ କରେ । ତେଣୁ ସେମାନେ ନିଜ ନିଜ ଭିତରେ ଡାକ ଟିକଟ ବଦଳାନ୍ତି । ଯାହାର ଗୋଟିଏ ପ୍ରକାର ଡାକ ଟିକଟ ଦୁଇଟି ହୋଇଯାଏ, ସେ ଅଧିକା ଡାକଟିକଟଟି ବଦଳାଇ ନୂଆ ଡାକଟିକଟ୍-ଟିଏ ସଂଗ୍ରହ କରେ ।

ଟେଲିଭିଜନ୍‌ରେ ଫୁଟ୍‌ବଲ୍ କି କ୍ରିକେଟ୍ ଖେଳଥିଲେ ନାଇଜଲ୍ ହୋଇ ଶୋଷ ଭୁଲି ଟେଲିଭିଜନ୍ ଆଗରେ ବସିଥାଏ । ଖେଳ ଦେଖିବା ମଝିରେ ବେଳେ ବେଳେ ସେ ବାବୁକୁ ଟେଲିଫୋନ୍ କରେ । ଟେଲିଫୋନ୍‌ରେ ନାଇଜଲ୍ ଓ ବାବୁ ଖେଳ ବିଷୟରେ ଆଲୋଚନା କରନ୍ତି । ଖେଳ ଯେମିତି ଦୁଇଜଣଙ୍କର ଗୋଟିଏ ନିଶା !

ଶନିବାର ଓ ରବିବାର ହେଲେ ନାଇଜଲ୍ ବାବୁଘରେ ଆସି କେବେ କେମିତି ରହେ । ପିଲା ଦୁହେଁ ଏକାଠି ରହନ୍ତି, ଏକାଠି ଖାଆନ୍ତି ଓ ମନ ଇଚ୍ଛା ଖେଳନ୍ତି । ବାବୁଙ୍କ ଘରେ ଭାତ, ଡାଲି, ତରକାରି ରନ୍ଧାହେଲେ ନାଇଜଲ୍ କିନ୍ତୁ ଖାଇପାରେ ନାହିଁ । ଭାରତୀୟ ଖାଦ୍ୟ ତାକୁ ମୋଟେ ଭଲ ଲାଗେ ନାହିଁ । ତାକୁ ପାଉଁରୁଟି, ଲହୁଣୀ, ମାଂସ ସିଝା ଓ ଆଳୁ-ଭଜା ଦିଆହୁଏ । କେବେ କେମିତି ବାବୁ ବି ନାଇଜଲ୍ ଘରେ ଶନିବାର ଓ ରବିବାର କଟାଏ । ବାବୁର କିନ୍ତୁ ଇଂରେଜ-ଖାଦ୍ୟ ଖାଇବାରେ କିଛି ଅସୁବିଧା ହୁଏନାହିଁ ।

କିଛିଦିନ ପରେ ନାଇଜଲ୍‌ର ବାପା କ୍ୟାଣ୍ଟେର୍‌ବେରି ସହର ଛାଡ଼ି ଆଉ ଗୋଟିଏ ସହରକୁ ଚାଲିଗଲେ । ନାଇଜଲ୍‌ର ନୂଆ ସହରରେ ଗୋଟିଏ ସ୍କୁଲରେ ନାମ ଲେଖାଇଲା । ନାଇଜଲ୍ ଚାଲିଯିବାରୁ ବାବୁ ଓ ପାପୁ ଖୁବ୍ ମନକଷ୍ଟ କଲେ ।

## ବିଲାତର ସବୁଠାରୁ ବଡ଼ପର୍ବ :

ବିଲାତରେ ସବୁଠାରୁ ବଡ଼ପର୍ବଟି ହେଉଛି ଖ୍ରୀସ୍‌ମସ୍ । ପ୍ରତିବର୍ଷ ଡିସେମ୍ବର ମାସ ପଚିଶି ତାରିଖରେ ଏହି ପର୍ବଟି ପଡ଼େ । ଆମେ ଭାରତରେ ଯେମିତି ଶ୍ରୀକୃଷ୍ଣଙ୍କର ଜନ୍ମଦିନଟିକୁ ପାଳନ କରୁ, ବିଲାତରେ ସେମିତି ଯୀଶୁଖ୍ରୀଷ୍ଟଙ୍କର ଜନ୍ମଦିନଟିକୁ ଖ୍ରୀସ୍‌ମସ୍ ପର୍ବରେ ପାଳନ କରନ୍ତି । ବିଲାତର ଅଧିକାଂଶ ଲୋକ ଖ୍ରୀଷ୍ଟିଆନ୍ । ଖାଲି ବିଲାତ କାହିଁକି, ୟୁରୋପ, ଆମେରିକା ଓ ଅଷ୍ଟ୍ରେଲିଆ ପ୍ରଭୃତି ମହାଦେଶର ଅଧିକାଂଶ ଲୋକ ଖ୍ରୀଷ୍ଟିଆନ୍ । ତେଣୁ ଏହିସବୁ ମହାଦେଶରେ ଖ୍ରୀସ୍‌ମସ୍ ଜାକ୍‌ଜମକରେ ପାଳନ କରାଯାଏ । ଆମ ଭାରତରେ ବି ଅନେକ ଖ୍ରୀଷ୍ଟିଆନ୍ ଅଛନ୍ତି । ସେମାନେ ଖ୍ରୀସ୍‌ମସ୍‌କୁ ମହା ସମାରୋହରେ ପାଳନ କରନ୍ତି ।

ବିଲାତରେ ଖାଲି ଖ୍ରୀଷ୍ଟିଆନ୍ କାହିଁକି, ଅନ୍ୟ ଧର୍ମର ଲୋକେ ବି ଖ୍ରୀସ୍‌ମସ୍ ପର୍ବଟି ପାଳନ କରନ୍ତି । ଏହି ପର୍ବର ଅନେକ ଦିନ ଆଗରୁ ସମସ୍ତେ ବନ୍ଧୁମାନଙ୍କ ପାଖକୁ ପଠାଇବା ପାଇଁ ଅନେକ ଉପହାର କିଣନ୍ତି । ତା ଛଡ଼ା ନୂଆ ପୋଷାକ ଓ ନୂଆ ଘରକରଣା ଜିନିଷ ସବୁ ବହୁ ପରିମାଣରେ କିଣନ୍ତି । ଖ୍ରୀସ୍‌ମସ୍ ପର୍ବ ଆସିଲେ ଦୋକାନ ଓ ସୁପର ମାର୍କେଟସବୁ ନୂଆ ନୂଆ ଜିନିଷରେ ଭର୍ତ୍ତି ହୋଇଯାଏ । ଦୋକାନମାନଙ୍କରେ ଖୁବ୍ ଭିଡ଼ ହୁଏ । ବର୍ଷରେ ସବୁଠାରୁ ବେଶୀ କିଣାବିକା ହୁଏ ଏହି ଖ୍ରୀସ୍‌ମସ୍ ସମୟରେ ।

ଖ୍ରୀସ୍‌ମସ୍‌ରେ ଇଂରେଜ ଲୋକେ ସେମାନଙ୍କ ବନ୍ଧୁମାନଙ୍କ ପାଖକୁ ଉପହାର ଓ ଖ୍ରୀସ୍‌ମସ୍ କାର୍ଡ଼ ପଠାନ୍ତି । ଏହି କାର୍ଡ଼ରେ ସୁନ୍ଦର ଚିତ୍ରସବୁ ଥାଏ ଓ 'ତୁମର ଖ୍ରୀସ୍‌ମସ୍ ସୁଖମୟ ହେଉ' ବୋଲି ଲେଖାଥାଏ । ଘରେ ଘରେ ଖ୍ରୀସ୍‌ମସ୍ ବୃକ୍ଷ ସଜାନ୍ତି । କେହି କେହି 'ହୋଲି' ଗଛର ଡାଳରେ ଆଉ କେହି କେହି କାଗଜ, ସୋଲ କିମ୍ବା ପ୍ଲାଷ୍ଟିକରେ ତିଆରି ଗଛରେ ଛୋଟ ଛୋଟ କଣ୍ଢେଇ ଖଞ୍ଜି ଖ୍ରୀସ୍‌ମସ୍ ବୃକ୍ଷ ତିଆରି କରନ୍ତି । ବନ୍ଧୁମାନଙ୍କ ନିକଟରୁ ଆସିଥିବା କାର୍ଡ଼ ସବୁକୁ ମଧ୍ୟ ଏହି ବୃକ୍ଷରେ ଖଞ୍ଜି ଦିଆଯାଏ । ଏହି ବୃକ୍ଷଟିକୁ ଅନେକ ଲୋକ ଝରକା ପାଖରେ ରଖିଥାନ୍ତି ଓ ସେଥିରେ ଅନେକ ସୁନ୍ଦର ସୁନ୍ଦର ବିଜୁଳିବତି ଲଗାଇଥାନ୍ତି । ତେଣୁ, ରାସ୍ତାରେ ଯାଉଥିବା ଲୋକେ ଏହି ଖ୍ରୀସ୍‌ମସ୍ ବୃକ୍ଷସବୁକୁ ଦେଖି ପାରନ୍ତି । ରାସ୍ତା ଓ ଦୋକାନମାନଙ୍କରେ ବି ଠାଏ ଠାଏ ବଡ଼ ବଡ଼ ଖ୍ରୀସ୍‌ମସ୍ ବୃକ୍ଷ ରଙ୍ଗ ବେରଙ୍ଗର ବିଜୁଳି ଆଲୁଅରେ ଖଞ୍ଜା ହୋଇ ରଖା ଯାଇଥାଏ । ଖ୍ରୀସ୍‌ମସ୍ ଦିନ ସନ୍ଧ୍ୟାରେ

ହଲାଣ୍ଡର ସବୁ ସହର, ବଜାର ଓ ଘର ସବେ ଯେମିତି ଆନନ୍ଦ ଓ ଆଲୋକରେ ହସିଉଠେ !


( ଖ୍ରୀସ୍‌ମସ୍ ବୃକ୍ଷ )

ଖ୍ରୀସ୍‌ମସ୍ ଆସିଲେ ବାବୁ ଓ ପାପୁ ବହୁତ ଖୁସୀ ହୁଅନ୍ତି । ସେମାନଙ୍କ ବାପା ସେମାନଙ୍କୁ ଖ୍ରୀସ୍‌ମସ୍‌ରେ ନୂଆ ନୂଆ ବହି ଓ କଣ୍ଢେଇ କିଣି ଦିଅନ୍ତି । ବାବୁର ଖେଳ ଜିନିଷ ଓ କଣ୍ଢେଇ କିଣିବାରେ ଭାରି ଝୁଙ୍କ୍ । କିନ୍ତୁ ପାପୁର ଆଗ୍ରହ ବହି କିଣିବାରେ । ଖ୍ରୀସ୍‌ମସ୍ ସମୟରେ ହଲାଣ୍ଡରେ ପିଲାମାନଙ୍କ ପାଇଁ ଅନେକ ନୂଆ ନୂଆ ବହି ବାହାରେ, ନୂଆ ନୂଆ ପ୍ରକାର କଣ୍ଢେଇ ବି ବଜାରକୁ ଆସେ । ବାବୁ ଓ ପାପୁ ଦୋକାନ ଓ ସୁପର ମାର୍କେଟ୍‌ମାନଙ୍କରେ ବୁଲି ନୂଆ ନୂଆ କଣ୍ଢେଇ ଓ ବହି ଦେଖନ୍ତି । ସେମାନେ ସେମାନଙ୍କ ସାଙ୍ଗମାନଙ୍କ ପାଇଁ ନିଜେ 'ଖ୍ରୀସ୍‌ମସ୍ କାର୍ଡ଼' ତିଆରିକରି ସେମାନଙ୍କ ପାଖକୁ ପଠାନ୍ତି ।

ଥରେ ଜଣେ ଇଂରେଜ ଲୋକ ଖ୍ରୀସ୍‌ମସ୍‌ରେ ବାବୁ, ପାପୁ ଓ ସେମାନଙ୍କ ବାପା ମାଆଙ୍କୁ ତାଙ୍କ ଘରକୁ ଡ଼ାକିଥିଲେ । ତାଙ୍କ ନାଁଆ ଜନ୍ ଷ୍ଟୋନ୍‌ହାଉସ୍ । ଷ୍ଟୋନ୍‌ହାଉସ୍ ଗୋଟିଏ ଗୀର୍ଜାର ପାଦ୍ରୀ । ପ୍ରତିବର୍ଷ ସେ ଖ୍ରୀସ୍‌ମସ୍‌ରେ ହଲାଣ୍ଡରେ ରହୁଥିବା ଗୋଟିଏ ଅଣଇଂରେଜ ପରିବାରକୁ ନିଜ ଘରକୁ ଡାକନ୍ତି । ତାଙ୍କ ଘରେ ସୁନ୍ଦର ଖ୍ରୀସ୍‌ମସ୍ ବୃକ୍ଷଟିଏ ସଜା ହୋଇଥାଏ । ବାବୁ ଓ ପାପୁଙ୍କୁ

ସେ ଗୋଟିଏ ବହି ଉପହାର ଦେଲେ । ତା ପରେ ବାବୁ, ପାପୁ ଓ ସେମାନଙ୍କ ବାପା-ମାଆ ଷ୍ଟୋନ୍‌ହାଉସ୍‌ଙ୍କ ସଙ୍ଗେ ଖାଇବସିଲେ । ସେମାନଙ୍କ ଖାଇବା ଟେବୁଲ ଉପରେ ଗୋଟିଏ ବଡ଼ ଟର୍କି ଚଢ଼େଇ ସିଝା ହୋଇ ରଖା ଯାଇଥାଏ । ଏଇ ଚଢ଼େଇଟି ଠିକ୍ କୁକୁଡ଼ା ପରି, କିନ୍ତୁ କୁକୁଡ଼ାଠାରୁ ଦୁଇ ତିନିଗୁଣ ବଡ଼ । ଖ୍ରୀଷ୍ଟ୍‌ମସ୍‌ରେ ବିଲାତରେ ସମସ୍ତେ ଟର୍କି ଚଢ଼େଇ ମାଂସ ଖାଇବାକୁ ଭଲ ପାଆନ୍ତି ।

ବାବୁ ଓ ପାପୁଙ୍କୁ ଟର୍କି ଚଢ଼େଇ ମାଂସ ଖୁବ୍ ଭଲ ଲାଗିଲା । ସେମାନେ ଜନ୍ ଷ୍ଟୋନ୍‌ହାଉସ୍‌ଙ୍କ ଘରେ ମଜାରେ ଖ୍ରୀସ୍‌ମସ୍ ଦିନଟି କଟାଇଲେ ।

## ଜମ୍ବଲ୍ ସେଲ୍ :

ବାବୁ ଓ ପାପୁଙ୍କ ଘର ପାଖରେ କେବେ କେବେ ଜମ୍ବଲ୍ ସେଲ୍ ହୁଏ । ଜମ୍ବଲ୍ ସେଲ୍ ହେଲେ ସେମାନେ ଖୁବ୍ ଖୁସି । ପାପୁ ତ ସବୁବେଳେ ଜମ୍ବଲ୍ ସେଲ୍‌କୁ ଯିବାପାଇଁ ଚାହିଁ ବସିଥାଏ ।

ଜମ୍ବଲ୍ ସେଲ୍ ମାନେ କ'ଣ ଜାଣ ? ପୁରୁଣା ଜିନିଷସବୁ ଅତି ଶସ୍ତାରେ ବିକ୍ରୀ ହେବା । ଲୁଗାପଟା, ଜୋତା, ବହି, କଣ୍ଢେଇ କପ୍, ପ୍ଲେଟ ସବୁ ଏଇ ଜମ୍ବଲ୍ ସେଲ୍‌ରେ ମିଳେ । ଯେଉଁ ଜିନିଷର ଦାମ୍ ଗୋଟିଏ ପାଉଣ୍ଡ ବା କୋଡ଼ିଏ ଟଙ୍କା, ତାହା ପାଞ୍ଚ ପେନ୍‌ସ ବା ଏକ ଟଙ୍କାରେ ମଧ୍ୟ ମିଳିଯାଏ । ତେଣୁ ଜମ୍ବଲ୍ ସେଲ୍‌ରେ ବହୁଲୋକଙ୍କ ଭିଡ଼ହୁଏ । ଜିନିଷପତ୍ର ସବୁ ଏତେ ଶୀଘ୍ର ବିକ୍ରୀ ହୋଇଯାଏ ଯେ, ବେଳେ ବେଳେ ତୁମକୁ ଖାଲିହାତରେ ଫେରିବା ପାଇଁ ପଡ଼େ !

ବିଲାତ ଗୋଟିଏ ଧନୀ ଦେଶ । ତେଣୁ ସେ ଦେଶରେ ଲୋକଙ୍କ ହାତରେ ଅନେକ ପଇସା । ସେମାନେ ଗୋଟିଏ ଜିନିଷ ପୁରୁଣା ହୋଇଗଲେ ତାକୁ ବଦଳାଇ ନୂଆ ଜିନିଷଟିଏ କିଣିବାକୁ ଚାହାନ୍ତି । ମନେକର ଜଣେ ଲୋକର ରେଡ଼ିଓ ପୁରୁଣା ହୋଇଗଲା । ସେ ଆଉ ଗୋଟିଏ ନୂଆ ଧରଣର ରେଡ଼ିଓ କିଣିବାକୁ ଚାହିଁଲା । ତେବେ ସେ ପୁରୁଣା ରେଡ଼ିଓଟିକୁ ଖୁବ୍ କମ୍ ଦାମ୍‌ରେ ବିକ୍ରୀ କରିଦିଏ । ବିଲାତରେ ପୁରୁଣା ଜିନିଷ ବା ସେକେଣ୍ଡହାଣ୍ଡ୍ ଜିନିଷ ସବୁ ଅତି ସହଜରେ କିଣିବାକୁ ମିଳେ । ଇଂରେଜ ଲୋକେ ତ ସେମାନଙ୍କ ଜିନିଷ ପତ୍ରର ଭଲ ଯତ୍ନ ନିଅନ୍ତି । ତେଣୁ ପୁରୁଣା ଜିନିଷ ଅନେକ ସମୟରେ ଭଲ ଅବସ୍ଥାରେ ଥାଏ ।

ବିଲାତରେ ଗୋଟିଏ ମଜା କଥା ହେଉଛି, ଶହେ ଦୁଇଶହ କି ପାଞ୍ଚଶହ ବର୍ଷ ତଳର ପୁରୁଣା ଜିନିଷ ସବୁ ମଧ୍ୟ ଦୋକାନମାନଙ୍କରେ ବିକାହୁଏ । ଏମିତି ଜିନିଷ ସବୁକୁ 'ଆଣ୍ଟିକ୍' କହନ୍ତି । ଖାଲି 'ଆଣ୍ଟିକ୍' ବିକିବା ପାଇଁ ସବୁ ସହରରେ ଦୋକାନମାନ ଥାଏ । ଇଂରେଜମାନେ ପୁରୁଣା ଜିନିଷସବୁ ଘରେ ରଖିବାକୁ ଭଲ ପାଆନ୍ତି । ତେଣୁ ସେମାନେ ବହୁଟଙ୍କା ଦେଇ ପୁରୁଣା ଚିତ୍ର, ବାକ୍ସ ବା ପ୍ଲେଟ ପ୍ରଭୃତି କିଣିନେଇ ଘରେ ରଖନ୍ତି ।

## ଇଂରେଜ ପିଲାଙ୍କ ଦିଆଲି :

ଦିନେ ବାବୁ ଓ ପାପୁଙ୍କ ମିସ୍ ସ୍କୁଲରେ ପିଲାମାନଙ୍କୁ କହିଲେ, "ସମସ୍ତେ କାଲି ସଞ୍ଜକୁ ସ୍କୁଲକୁ ଆସିବ । ସ୍କୁଲରେ 'ବନ୍‌ଫାୟାର୍ ନାଇଟ୍' ହେବ ।"

ବାବୁ ଓ ପାପୁ ପରଦିନ ସଞ୍ଜରେ ସ୍କୁଲକୁ ଗଲେ । ସବୁପିଲା ସେମିତି ଆସିଥାନ୍ତି । ଛୋଟ ଛୋଟ ପିଲାମାନଙ୍କ ସାଙ୍ଗରେ ସେମାନଙ୍କ ବାପା-ମାଆମାନେ ବି ଆସିଥାନ୍ତି । ସବୁପିଲା ହାତରେ ଗୋଟିଏ ଗୋଟିଏ ମହମବତୀ, ଟର୍ଚ୍ଚ କି ଛୋଟ ଲଣ୍ଠନ ଆଣିଥାନ୍ତି । ଆଗରୁ ଗୋଟିଏ ଜାଗାରେ କାଠି, କୁଟା କାଗଜ ପ୍ରଭୃତି ଜମା ହୋଇଥାଏ । ପିଲାମାନେ ସେଥିରେ ନିଆଁ ଲଗାଇଲେ । ହୁତ୍ ହୁତ୍ ନିଆଁ ଉପରକୁ ଉଠିଲା । ପିଲାମାନେ ଆନନ୍ଦରେ ପାଟିଗୋଳ କରୁଥାନ୍ତି । ମହମବତୀ, ଟର୍ଚ୍ଚ, ଲଣ୍ଠନ ଆଲୁଅରେ ସ୍କୁଲଟି ଝଲସି ଦିଶୁଥାଏ ।

ସବୁଠୁ ମଜା କଥା, ଅନେକ ଗୁଡ଼ିଏ ବଡ଼ିଆ ବଡ଼ିଆ ବାଣ ବି ଆଗରୁ ସ୍କୁଲରେ ଆଣି ରଖା ହୋଇଥାଏ । ବାଣ ଗୁଡ଼ିକ ଫୁଟିବା ଦେଖି ପିଲାମାନେ ଆହୁରି ଖୁସି ହେଲେ । ବାଣ ଫୁଟା ଦେଖି ଘରକୁ ଫେରିଲାବେଳକୁ ରାତି ଆଠଟା କି ନଅଟା ।

ବାବୁ ଓ ପାପୁ ଆଗରୁ ଭାରତରେ ଦିଆଲି ଦେଖିଥିଲେ । ତେଣୁ "ବନ୍‌ଫାୟାର୍ ନାଇଟ୍" ଦେଖି ସେମାନେ ସେମାନଙ୍କ ବାପା-ମାଆଙ୍କୁ କହିଲେ, 'ବନ୍‌ଫାୟାର୍ ନାଇଟ୍' ଠିକ୍ ଆମର ଦିଆଲି ପରି ।'

## ବିଲାତ ଛାଡ଼ିବାକୁ ସେମାନେ ରାଜି ହେଲେ ନାହିଁ :

ବାବୁ ଓ ପାପୁଙ୍କର ବିଲାତ ଛାଡ଼ି ଭାରତକୁ ଫେରିବା ସମୟ ଆସ୍ତେ ଆସ୍ତେ ପାଖେଇ ଆସିଲା । ସେମାନେ ଦୁଇବର୍ଷ ପାଇଁ ବିଲାତ ଯାଇଥିଲେ । ଦୁଇବର୍ଷ କେତେ ଶୀଘ୍ର ଚାଲିଗଲା ଭାବି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ଭାରତକୁ ଫେରିବା ପାଇଁ ପାପୁର ମୋଟେ ଇଚ୍ଛା ନ ଥାଏ । ଭାରତ ଗଲେ ଏତେ ସୁନ୍ଦର ସୁନ୍ଦର ବହି ତ ପଢ଼ିବାକୁ ମିଳିବ ନାହିଁ । ତା ଛଡ଼ା ଟେଲିଭିଜନ୍‌ରେ ଏତେ ସୁନ୍ଦର ସୁନ୍ଦର ମଜା ମଜା ଛବି ଆଉ ଦେଖି ହେବ ନାହିଁ । ତାର କେତେ ଭଲ ଭଲ ସାଙ୍ଗଙ୍କୁ ଛାଡ଼ି ଯିବାକୁ ହେବ । ସେ ବାପାଙ୍କୁ କହିଲା, "ବାପା, ଆମେ ଏଇ ଦେଶରେ ରହିବା । ଭାରତ ଗଲେ କ'ଣ ଭଲ ହେବ ?"

ବାବୁ ଆଗରୁ ଭାରତ ଚାଲିଗଲେ ଭଲ ହୁଅନ୍ତା ବୋଲି କହୁଥିଲା । କିନ୍ତୁ ବିଲାତ ଛାଡ଼ିବା ଦିନ ଯେମିତି ପାଖେଇ ଆସିଲା, ବିଲାତ ଛାଡ଼ିବା ପାଇଁ ସେ ଆଉ ମନ କଲାନାହିଁ । ବିଲାତରେ କେତେ ମଜା ମଜା ଖେଳ, କେତେ ସାଙ୍ଗ ସାଥୀ । ସେ କହିଲା, "ବାପା, ବିଲାତରେ ତ ଅନେକ ଭାରତୀୟ ସବୁଦିନ ପାଇଁ ରହୁଛନ୍ତି । ଆମେ ରହିଗଲେ କ'ଣ ଅସୁବିଧା ହୁଅନ୍ତା ?"

ବାବୁ ଓ ପାପୁ ଯେ ବିଲାତକୁ ବହୁତ ଭଲ ପାଆନ୍ତି, ସେମାନଙ୍କ ବାପା ତାହା ବୁଝି ପାରିଲେ । କିନ୍ତୁ ସେ କହିଲେ, "ଦେଖ ପିଲାମାନେ, ବିଲାତ ଗୋଟିଏ ଖୁବ୍ ଭଲ ଦେଶ ସତ, କିନ୍ତୁ ଆମର ନିଜ ଦେଶ ହେଉଛି ଭାରତ । ଭାରତ ଗୋଟିଏ ଖୁବ୍ ବଡ଼ ଦେଶ । ନିଜ ଦେଶରେ ରହିବା ସବୁଠାରୁ ଭଲ । ତୁମେମାନେ ବଡ଼ ହେଲେ ବହୁତ ପାଠ ପଢ଼ି ପୃଥିବୀର ବହୁ ଦେଶ ଦେଖିବା ଉଚିତ । କିନ୍ତୁ ନିଜ ଦେଶକୁ ଭୁଲିଯିବା ଠିକ୍ ନୁହେଁ । ନିଜ ଦେଶର ଯେପରି ସେବା କରି ପାରିବ, ତୁମେମାନେ ସେହି କଥା ଭାବିବା ଉଚିତ ।"

ବିଲାତ ଛାଡ଼ିବା ଆଗରୁ ବାବୁ ଓ ପାପୁ ସେମାନଙ୍କ ସ୍କୁଲର ମିସ୍ ଓ ସାଙ୍ଗ ସାଥୀ-ମାନଙ୍କଠାରୁ ବିଦାୟ ନେଲେ । ସେମାନଙ୍କୁ କେହି କେହି ବହି, କଣ୍ଢେଇ ଓ ଅନ୍ୟାନ୍ୟ ଜିନିଷ ଉପହାର ଦେଲେ । ସେମାନେ ବିଲାତ ଛାଡ଼ିବେ ବୋଲି ଯେମିତି ମନ କଷ୍ଟ କଲେ, ସେମାନେ ଭାରତ ଫେରି ଯାଉଛନ୍ତି ବୋଲି କେତେ ଜଣ ଇଂରେଜପିଲା ବି ସେମିତି ମନ କଷ୍ଟ କଲେ । ସିଏ ଯେଉଁ ଦେଶରେ ରହୁଥାଉ ନା କାହିଁକି, ମଣିଷ ସମାଜ ଗୋଟିଏ ପରିବାର ଭଳି । ପୁଣି ପିଲାମାନେ ଅତି ସହଜରେ ସାଙ୍ଗ ସାଥୀ ହୋଇଯାନ୍ତି । ବଡ଼ ବଡ଼ଙ୍କ ରାଜନୀତି ଓ ଜଟିଳ କଥାରେ ତ ସେମାନେ ପଶନ୍ତି ନାହିଁ ।

ଶେଷରେ ଦିନେ ଉଡ଼ାଜାହାଜରେ ଚଢ଼ି ବାବୁ ଓ ପାପୁ ସେମାନଙ୍କ ବାପା ମାଆଙ୍କ ସଙ୍ଗେ ଲଣ୍ଡନ୍‌ରୁ ଦିଲ୍ଲୀ ଆସିଲେ । ଦିଲ୍ଲୀରୁ ରେଲ୍‌ରେ ବସି ସେମାନେ ଆସିଲେ ଓଡ଼ିଶା ।

## ସେମାନେ କ'ଣ ମନେ ରଖିଛନ୍ତି :

ଓଡ଼ିଶାକୁ ଆସିବାପରେ ବାବୁ ଓ ପାପୁ ମୋଟେ ବିଲାତକୁ ଭୁଲି ନାହାନ୍ତି । ବିଲାତରେ ସେମାନଙ୍କର ଅନେକ ସୁନ୍ଦର ସୁନ୍ଦର ଫଟୋ ଉଠା ହୋଇଥିଲା । ସେଇ ଫଟୋ-ସବୁକୁ ଦେଖିଲେ ସେମାନଙ୍କୁ ଲାଗେ, ସତେ ଯେମିତି ସେମାନେ ଆଉ ଗୋଟିଏ ଦୁନିଆରେ ରହୁଥିଲେ ! କେବେ କେମିତି ସେମାନେ ବିଲାତରୁ ସେମାନଙ୍କ ସାଙ୍ଗମାନଙ୍କଠାରୁ ଚିଠି ପାଇଲେ ବହୁତ ଖୁସୀ ହୁଅନ୍ତି । ଚିଠି ଗୁଡ଼ିକୁ ବାରମ୍ବାର ପଢ଼ନ୍ତି । ତାଙ୍କ ବାପା ବେଳେ ବେଳେ ଭାରତକୁ ଆସିଥିବା ଇଂରେଜ ବନ୍ଧୁଙ୍କୁ ତାଙ୍କ ଘରକୁ ଡାକନ୍ତି । ବାବୁ ଓ ପାପୁ ଇଂରେଜ ଲୋକଟିଏ ଦେଖିଲେ ତାଙ୍କ ସଙ୍ଗେ କେତେ କ'ଣ ଗପନ୍ତି । ଇଂରେଜ ଲୋକଟି ଯେମିତି ସେମାନଙ୍କର ଆଗରୁ ଜଣାଶୁଣା !

ପାପୁ ସବୁବେଳେ ଟେଲିଭିଜନ୍‌ର ମଜା ମଜା ଛବିସବୁକୁ ମନେ ପକାଏ—ବାଦୁଡ଼ି ମଣିଷ, ସିକ୍ସ ମିଲିଅନ୍ ଡଲାର୍ ମ୍ୟାନ୍, ବଗ୍‌ସ୍‌ବନି ଛବି ତ ଭାରତରେ ଦେଖିବାକୁ ମିଳେ ନାହିଁ । ତେବେ ସେମାନଙ୍କ ବିଷୟରେ ଗପ ବହି ସବୁ ଭାରତରେ ମିଳେ । ପାପୁ ସେମିତି ଗପ ବହି ପାଇଲେ ଖୁସିରେ ପଢ଼େ । ବାବୁ କହେ—ବିଲାତରେ କେତେ ବଢ଼ିଆ ବଢ଼ିଆ ଖେଳ ଜିନିଷ, ପିଲାମାନେ କେତେ ନୂଆ ନୂଆ ଖେଳ ଖେଳନ୍ତି ! ଭାରତରେ ଏତେ ଖେଳ ଜିନିଷ ମିଳେ ନାହିଁ ।

ବାବୁ ଓ ପାପୁ ଦୁହେଁ ବିଲାତରେ ଆଇସ୍‌କ୍ରିମ୍ ଖୁବ୍ ଭଲ ପାଉଥିଲେ । ବିଲାତରେ ଯେମିତି ଭଲ ଭଲ ଆଇସ୍‌କ୍ରିମ୍ ମିଳେ, ଆମ ଓଡ଼ିଶାରେ ତ ସେମିତି ମିଳେନାହିଁ । ପିଲା ଦୁହେଁ ବେଳେ ବେଳେ ମନ କଷ୍ଟ କରନ୍ତି—ଆଃ, ବିଲାତରେ କି ବଢ଼ିଆ ଆଇସକ୍ରିମ୍ ! ଆମର ଏଠି ସେମିତି ମିଳନ୍ତା କି !!!



ଶିଶୁ ସଂସାର—୧

# ଶିଶୁ ସଂସାର

ଆଖି ଖୋଲିଲା ଦିନୁ ଶିଶୁ ଦେଖୁଥାଏ, ତା ସମ୍ମୁଖରେ ଗୋଟାଏ ବିସ୍ମୟଭରା ବିଶ୍ୱ । ବିଶାଳ ଜଗତ ତା ପାଇଁ ନୂଆ ନୂଆ ଜିନିଷଙ୍କର ଅସରନ୍ତି ଭଣ୍ଡାର । ତାର ଜାଣିବା ଭଳି କେତେ କଥା ସଂସାରରେ ନ ଅଛି ? ସେ ସବୁ ପୁଣି କେଡ଼େ ମଜାଦାର୍ ଆଉ ମନୋମୁଗ୍ଧକର !

ପଶୁପକ୍ଷୀଙ୍କର କାହାଣୀ, ରଜାରାଣୀ ଗପସବୁ ଶୁଣିବାରେ ଶିଶୁର ବଡ଼ ଆନନ୍ଦ । ସେ ବୁଝିଲା ପରି ଗୀତ ବି ପଦ ତାର ଛୋଟ ହୃଦୟରେ ଅସୀମ ସ୍ୱପ୍ନ ଭରିଦିଏ । ଶିଶୁକୁ ତାର ମନଲାଖି କାହାଣୀ ଓ ହୃଦୟସ୍ପର୍ଶୀ କବିତା ଶୁଣାଇବା ଏବଂ ଏ ବିଚିତ୍ର ଜଗତର ନାନା ବିଷୟ ସହିତ ପରିଚୟ କରାଇବା 'ଶିଶୁଜଗତ' ସିରିଜ୍‌ର ଉଦ୍ଦେଶ୍ୟ ।